# ବିଚିତ୍ର ପଶୁ

ଶ୍ରୀ ଉଦୟ ନାଥ ଷଡ଼ଙ୍ଗୀ





ଓଡ଼ିଶା ବୁକ୍ ଷ୍ଟୋର

# ବିଚିତ୍ର ପଶୁ

ଶ୍ରୀ ଉଦୟ ନାଥ ଷଡ଼ଙ୍ଗୀ
କଟକ

ପ୍ରକାଶକ :
ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ
କଟକ-୭୫୩ ୦୦୨

ପ୍ରଥମ ପ୍ରକାଶ-୧୯୯୧

ମୁଦ୍ରଣ :
ୟୁନିଭର୍ସାଲ ପ୍ରେସ୍
ଖୋଲାସାହି (ନିଉ କଲୋନୀ)
କଟକ-୧

ମୂଲ୍ୟ :
**ଆଠଟଙ୍କା ପଚାଶ ପଇସା**

BICHITRA PASU

by
Sri U. N. Sarangi

Published by
G. C. Patra
Orissa Book Store
Binodbehari, Cuttack-2

1st Edition : 1991

**Price : Rs 8-50**

# ସୂଚୀ





# ମାଂସାଶୀ ଓ ତୃଣଭୋଜୀ ପଶୁ

ସମଗ୍ର ଦୁନିଆଁରେ ଯେତେ ଚତୁଷ୍ପଦ ପଶୁ ଅଛନ୍ତି, ସେମାନଙ୍କୁ ପ୍ରଧାନତଃ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଏ । ଗୋଟିଏ ହେଲା ମାଂସାଶୀ ଓ ଅନ୍ୟଟି ତୃଣଭୋଜୀ ।

ମାଂସାଶୀମାନେ ଅନ୍ୟ ଜୀବଜନ୍ତୁଙ୍କ ମାଂସ ଖାଇ ବଞ୍ଚନ୍ତି । ସେଥିପାଇଁ ସେମାନଙ୍କୁ ବିଭିନ୍ନ ଜାତିର ଜୀବଙ୍କୁ ମାରିବାକୁ ପଡ଼ିଥାଏ । ସେମାନଙ୍କର ଅସ୍ତ୍ର ହେଉଛି ପାଟିଏ ତୀକ୍ଷ୍ଣ ମୁନିଆ ଓ ଟାଣୁଆ ଦାନ୍ତ ଏବଂ ଗୋଡ଼ରେ ସେହିଭଳି ନଖ । ଗୃହ ପାଳିତ ବିଲେଇ କୁକୁରଙ୍କ ଠାରୁ ଆରମ୍ଭ କରି ବଣରେ ରହୁଥିବା ବାଘ, ସିଂହ, ଗଧିଆ ପ୍ରଭୃତି ଏ ଶ୍ରେଣୀର ପଶୁ ।

ତୃଣଭୋଜୀ ପଶୁଙ୍କର ଘାସ, ଡାଳପତ୍ର ଓ ଉଦ୍ଭିଦରୁ ଉତ୍ପନ୍ନ ଫଳ, ଫୁଲ, ମୂଳ ଆଦି ସବୁ କିନର ଖାଦ୍ୟ । ସେମାନଙ୍କର ପାଟିରେ ଦୃଢ଼ ମୁନିଆଁ ଦାନ୍ତ ନ ଥାଏ । ତା ସ୍ଥାନରେ ଥାଏ ଦୃଢ଼ ମୋଟା ଦାନ୍ତ ବା ଅତି ଟାଣ ମାଢ଼ି । ଗୋଡ଼ରେ ନଖ ନ ଥାଇ ଥାଏ ଟାଣ ଜିଦା ଖୁରା । ବଣ ଜଙ୍ଗଲ, ପାହାଡ଼ ପର୍ବତରେ ବୁଲି ଖାଦ୍ୟ ସଂଗ୍ରହ କରିବାରେ ଏହି ମୋଟା ଦାନ୍ତ ଓ ଖୁରା ତାଙ୍କୁ ବିଶେଷ ସାହାଯ୍ୟ କରେ । ଗାଈ ଗୋରୁ, ଛେଳି ମେଣ୍ଢା ଠାରୁ ଆରମ୍ଭ କରି ବନବାସୀ ହରିଣ, ଶମ୍ବର, ଗୟଳ, ବଣୁଆ ଛେଳି ମେଣ୍ଢା ଆଦି ତୃଣଭୋଜୀ ଶ୍ରେଣୀରେ ଗଣ୍ୟ ହୁଅନ୍ତି । କେବଳ ଆତ୍ମରକ୍ଷା ପାଇଁ ଏମାନଙ୍କର ପ୍ରଧାନ ଅସ୍ତ୍ର ହେଉଛି ଶିଙ୍ଗ । ତେଣୁ ଏହି ପଶୁମାନଙ୍କୁ ଶୃଙ୍ଗୀ କୁହାଯାଏ ।

ଅବଶ୍ୟ ଶୃଙ୍ଗ ନ ଥିବା ତୃଣଭୋଜୀ ପଶୁ ଆଉ କେତେ ଜାତିର ଅଛନ୍ତି । ହାତୀ, ଘୋଡ଼ା, ଗଧ, ଜେବ୍ରା, ଜିରାଫ ଇତ୍ୟାଦି ତୃଣଭୋଜୀ । ଏମାନଙ୍କର ଶିଙ୍ଗ ନାହିଁ । ଶତ୍ରୁ କବଳରୁ ଆତ୍ମରକ୍ଷା କରିବା ପାଇଁ ଏମାନଙ୍କର ଅନ୍ୟ ପ୍ରକାର ବ୍ୟବସ୍ଥା ରହିଛି ।

ଏ ପୁସ୍ତକରେ କେବଳ ବଣରେ ରହୁଥିବା ଶୃଙ୍ଗୀ ମାନଙ୍କର ପରିଚୟ ଦିଆଯାଉଛି । ସେମାନଙ୍କର ଗୃହଚଳଣି, ଜୀବନ ରହସ୍ୟ, ଗତିବିଧି, ବିଶେଷରେ ଶିଙ୍ଗର କାର୍ଯ୍ୟ ଓ ମହାତ୍ମ୍ୟ ବର୍ଣ୍ଣନା କରାଯାଉଛି ।

ଏ ପଶୁମାନଙ୍କ ଭିତରୁ 'ଅଧିକାଂଶଙ୍କର ଦର୍ଶନ ପାଇବା ଆମମାନଙ୍କ ପକ୍ଷରେ ଅସମ୍ଭବ । ଆମ ଦେଶରେ ଥିବା ଚିଡ଼ିଆଖାନା, ଅଭୟାରଣ୍ୟ ପ୍ରଭୃତିରେ ମଧ୍ୟ ଏମାନଙ୍କୁ ଦେଖାଯାଏ ନାହିଁ ।

ଆଫ୍ରିକା ମହାଦେଶକୁ କୁହାଯାଏ ପୃଥିବୀର ଚିଡ଼ିଆଖାନା । ଏହାର ନିବିଡ଼ ବଣ ଜଙ୍ଗଲରେ, ପାହାଡ଼ ପର୍ବତ ଅଞ୍ଚଳରେ ଏତେ କିସମର ଜୀବଜନ୍ତୁ ଅଛନ୍ତି, ଅନ୍ୟ କୌଣସି ଅଞ୍ଚଳରେ ଏତେ ନାହାନ୍ତି ।

ଅତି ବିରାଟକାୟ ଜୀବଙ୍କ ଠାରୁ ଆରମ୍ଭ କରି କ୍ଷୁଦ୍ରାତି କ୍ଷୁଦ୍ର କୀଟ ପତଙ୍ଗ ପର୍ଯ୍ୟନ୍ତ ବହୁ ଶ୍ରେଣୀର ଜନ୍ତୁ ଆଫ୍ରିକା ଜଙ୍ଗଲରେ ବାସ କରିଥାନ୍ତି । ସେମାନଙ୍କ ରୂପଭେଦ, ସ୍ୱଭାବ ଚରିତ୍ର, ଗତିବିଧି, ଗୃହଚଳଣି ମଧ୍ୟ ଅତି ବିଚିତ୍ର । ଶୃଙ୍ଗୀ ଜାତିର ପଶୁ ମଧ୍ୟ ସେଠାରେ ବହୁ ପ୍ରକାରର ଦେଖା ଯାଆନ୍ତି ।

ଆଫ୍ରିକା ବ୍ୟତୀତ ଏସିଆ ମହାଦେଶର ଶୀତ ପ୍ରବଳ ସ୍ଥାନ ହିମାଳୟ, ତିବ୍ବତ ପ୍ରଭୃତି, ଆମେରିକାର ମେରୁ ନିକଟବର୍ତ୍ତୀ ଅଞ୍ଚଳ, ଇଉରୋପର କେତେକ ସୀମାନ୍ତ ବଣ ଜଙ୍ଗଲରେ ମଧ୍ୟ ବହୁ ଜାତିର ଶୃଙ୍ଗୀ ପଶୁ ବାସ କରନ୍ତି ।

ସାଧାରଣତଃ ଦେଖାଯାଏ, ମାଂସାଶୀ ପଶୁ ବେଶୀ ହିଂସ୍ର, ବଳବାନ୍ । ମାତ୍ର ଆକାରରେ ତୃଣଭୋଜୀଙ୍କ ଅପେକ୍ଷା ସାନ । ହାତୀ, ଓଟ, ଘୋଡ଼ା, ଗରିଲା ପ୍ରଭୃତି ତୃଣଭୋଜୀ ପଶୁଙ୍କ ଦେହ ବାଘ, ସିଂହଙ୍କ ଅପେକ୍ଷା ବହୁତ ବଡ଼ ।

କୋଟି କୋଟି ବର୍ଷ ତଳେ ପୃଥିବୀରେ କେବଳ ତୃଣଭୋଜୀ ଜୀବ ଦଳ ଦଳ ହୋଇ ବୁଲୁଥିଲେ । ସେତେବେଳକୁ ହିଂସ୍ର-ମାଂସାଶୀ ପ୍ରାଣୀ ଜନ୍ମ ହୋଇ ନଥିଲେ । ମଣିଷଙ୍କ ସୃଷ୍ଟି ତ ବହୁତ ପରେ ।

ସେହି ତୃଣଭୋଜୀ ଜୀବସବୁ ଆକାରରେ ବିରାଟକାୟ ଥିଲେ । ଜୀବବିତ୍ ପଣ୍ଡିତମାନେ ସେ ସବୁ ପଶୁଙ୍କ ନାମ ଦେଇଛନ୍ତି

ଷ୍ଟେଗୋସର୍‌ସ, ବ୍ରଣ୍ଟୋସରସ, ଡିପ୍ଲୋକ୍‌ସ, ଟ୍ରାଇସେରାଟପ୍‌ସ ଇତ୍ୟାଦି । ସେମାନେ କେବଳ ଶିଉଳି, ଡାଳ, ଘାସ, ଲତା, ଗଛପତ୍ର ଖାଉଥିଲେ । ଏମାନେ ହେଉଛନ୍ତି ବର୍ତ୍ତମାନ ପୃଥିବୀରେ ଚଳପ୍ରଚଳ ହେଉଥିବା ପ୍ରାଣୀମାନଙ୍କ ପୂର୍ବ ପୁରୁଷ ।

ସେହିପରି ହରିଣ ଜାତୀୟ ପଶୁମାନଙ୍କର ପୂର୍ବପୁରୁଷ ଥିଲେ "ଆଇରିଶ୍ ଡିଅର ।"

ଏବେ ଆୟାର୍ଲଣ୍ଡର ଜଙ୍ଗଲ ପାହାଡ଼ ଅଞ୍ଚଳରେ ମାଟିତଳୁ କେତେକ ବଡ଼ ବଡ଼ ପଶୁର କଙ୍କାଳ ହାଡ଼ ଓ କଙ୍କାଳର ଛାପ (ଫସିଲ) ମିଳିଛି । ଆୟାର୍ଲଣ୍ଡରୁ ପ୍ରଥମେ ମିଳିଥିବାରୁ ତାର ନାମ ଦିଆଯାଇଛି ଆଇରିଶ୍ ହରିଣ । ମାତ୍ର ପରେ ଗବେଷଣାରୁ ଜଣାଯାଇଛି, ଏହି ଜାତୀୟ ପଶୁ ସେ ସମୟରେ ପୃଥିବୀର ସବୁ ଅଞ୍ଚଳରେ ବାସ କରୁଥିଲେ ।

ବୈଜ୍ଞାନିକମାନେ ସେହି କଙ୍କାଳରୁ ଗଣନା କରି କହନ୍ତି, ଏମାନଙ୍କ ଉଚ୍ଚତା ଗୋଡ଼ ଖୁରାଠାରୁ ପିଠି ପର୍ଯ୍ୟନ୍ତ ସାତ ଆଠ ଫୁଟ ଥିଲା । ବେକଠାରୁ ଲାଞ୍ଜ ପର୍ଯ୍ୟନ୍ତ ଲମ୍ବ ମଧ୍ୟ ସେତିକି । ଅଥଚ ମୁଣ୍ଡରୁ ବାହାରି ଥିବା ଶିଙ୍ଗ ଦୁଇଟା ମଧ୍ୟ ସାତ ଆଠ ଫୁଟ ପର୍ଯ୍ୟନ୍ତ ଲମ୍ବ ।

ଏହି ଶିଙ୍ଗ ପ୍ରଥମେ ସରୁ ହୋଇ ଉପରକୁ ମୋଟା ହୋଇ ଦୁଇ ପାଖକୁ ସିଧା ଲମ୍ବି ଯାଇଥାଏ । ଗୋଟିଏ ପାଖର ଶେଷରୁ ଅନ୍ୟ ପାଖର ଶେଷ ପର୍ଯ୍ୟନ୍ତ ଦୂରତ୍ୱ ଦଶ ଫୁଟ ବା ତହିଁରୁ ଅଧିକ ।

ଏହି ଶିଙ୍ଗର ଶେଷ ମୁଣ୍ଡ ମଣିଷ ହାତର ପାପୁଲି ପରି ଚଉଡ଼ା । ତା' ଉପରେ ଛ' ସାତଟା ଲେଖାଏଁ ଲମ୍ବା ଆଙ୍ଗୁଠି ବା ନଖ ଥାଏ । ସେଗୁଡ଼ିକର ଅଗ୍ରଭାଗ ଅତି ମୁନିଆ ଓ ଈଷତ୍ ବଙ୍କା । ଶିଙ୍ଗ ଓ ନଖ ଇସ୍ପାତ ପରି ଟାଣ । ଏହାଦ୍ୱାରା ସେମାନେ ପାହାଡ଼ରୁ ପଥର ଖୋଳି ଗୁମ୍ଫା ତିଆରି କରୁଥିଲେ ।

ଆଦିମ ଯୁଗର ବିରାଟକାୟ ପଶୁଗୁଡ଼ିକ ବହୁକାଳ ହେଲା ଲୋପ ପାଇ ଯାଇଛନ୍ତି । ମାତ୍ର ସେମାନଙ୍କ ସମସାମୟିକ ଏହି ଆଇରିଶ୍

ହରିଣଙ୍କ ପୂର୍ବ ପୁରୁଷଙ୍କ ବଂଶ ନାଶ ହୋଇଛି, ଏଇମାତ୍ର ଦଶହଜାର ବର୍ଷ ପୂର୍ବ । ଯେଉଁ କଙ୍କାଳ ସବୁ ମାଟି ତଳୁ ମିଳୁଛି, ତାହା ଦଶହଜାର ବର୍ଷ ତଳର ବୋଲି ବୈଜ୍ଞାନିକମାନେ ହିସାବ କରୁଛନ୍ତି ।



( ଆଇରିଶ୍ ହରିଣ )

ସେ କାଳର ଅନ୍ୟ ଜୀବଜନ୍ତୁଙ୍କ ଭଳି ଆଇରିଶ୍ ଡିଅରର ଦେହ ବିଶାଳ, ମାତ୍ର ମୁଣ୍ଡ ଛୋଟ । ଆଖି ଦୁଇଟା ପୁଣି ଆହୁରି ସାନ ।



# ଜେମ୍‌ସ୍ ବକ୍

ଶୃଙ୍ଗୀମାନଙ୍କ ମଧ୍ୟରେ ଜେମ୍‌ସ୍ ବକ୍ ଗୋଟିଏ ଅଦ୍‌ଭୂତ ଜନ୍ତୁ ।

ଆଫ୍ରିକାର ଦକ୍ଷିଣ ପଶ୍ଚିମ ମରୁଭୂମି ସୀମାନ୍ତରେ ଥିବା ଜବଡ଼ ଜଙ୍ଗଲ ଜେମ୍‌ସ୍ ବକ୍‌ଙ୍କ ବାସଭୂମି ଓ ବଢ଼ିବାର ସ୍ଥଳୀ । ଏହାର ଶିଙ୍ଗ ଦୁଇଟି ଅତି ଅଦ୍‌ଭୁତ ।

ହରିଣ ଜାତୀୟ ଜୀବମାନଙ୍କ ମଧ୍ୟରେ 'ଜେମ୍‌ସ୍ ବକ୍' ସବୁଠାରୁ ବଡ଼ । ଏହାର ଉଚ୍ଚତା ଗୋଡ଼ ଖୁରାଠାରୁ ପିଠିଯାଏ ପାଞ୍ଚଫୁଟ ଓ



( ଜେମ୍‌ସ୍ ବକ୍ )

ଦୈର୍ଘ୍ୟ ଲାଞ୍ଜଠାରୁ ଶିଙ୍ଗ ପର୍ଯ୍ୟନ୍ତ ପ୍ରାୟ ଛଅଫୁଟ । ଦେହର ରଙ୍ଗ ଧୂସର ଓ ପେଟ ପାଖ କଳା । ଛୋଟ ଛୋଟ ଘନ ଲୋମରେ ସର୍ବାଙ୍ଗ ଆବୃତ । ପିଠି ସିଧା ସଳଖ, ବେକ ମୋଟା, ଆଖି ଦୁଇଟି ଅତି ସାନ । ଦେହରେ ବଳ ବହୁତ ବେଶୀ ।

'ଜେମସ୍ ବକ୍'ର ପ୍ରଧାନ ଦର୍ଶନୀୟ ହେଉଛି ତାର ଶିଙ୍ଗ ଦୁଇଟି । ପ୍ରତ୍ୟେକ ଶିଙ୍ଗର ଉଚ୍ଚତା ଚାରିଫୁଟରୁ ସାଢ଼େ ଚାରିଫୁଟ । ମୂଳ ଅଳ୍ପ ମୋଟା । ଉପରକୁ କ୍ରମେ ସରୁ ହୋଇଯାଇ ଅଗ ଇସ୍ପାତ ବର୍ଚ୍ଛା ପରି ତୀକ୍ଷ୍ଣ ମୁନିଆ । ଏହା ହିଁ ତାର ଆତ୍ମରକ୍ଷା କରିବାର ପ୍ରଧାନ ଅସ୍ତ୍ର ।

ଜୀବଟି ଶାନ୍ତ, ଭଦ୍ର ଓ ମିଶୁକ ସ୍ୱଭାବର । ମାତ୍ର ବିପଦ ଆଶଙ୍କା କଲେ ଅତି ଭୀଷଣ ହୋଇଉଠେ । ଦଉଡ଼ି ଯିବା ଶକ୍ତି ତାର ଯଥେଷ୍ଟ ଥିଲେ ମଧ୍ୟ, କେହି ଆକ୍ରମଣ କରିବାକୁ ଆସୁଛି ଜାଣିଲେ ସେ ପଳାଇ ଯାଏ ନାହିଁ । ମୁଣ୍ଡ ତଳକୁ ପୋତି ଶିଙ୍ଗ ଦୁଇଟା ଦେଖାଇ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଯାଏ ।

ଏହାର ମାଂସ ବାଘ, ସିଂହଙ୍କର ପ୍ରିୟ ଖାଦ୍ୟ । ସେମାନେ ଲୋଭ ପରବଶ ହୋଇ ଆକ୍ରମଣ କରିବାକୁ ଆସିଲେ ମାଂସ ତ ଖାଇ ପାରନ୍ତି ନାହିଁ, ଶେଷରେ ପ୍ରାଣ ହରାଇଥାନ୍ତି । ଶିକାର କରିବାକୁ ଯାଇ ଶିକାରୀ ନିଜେ ଶିକାର ହୁଏ । ଜେମସ୍ ବକ୍ ତୀକ୍ଷ୍ଣ ବର୍ଚ୍ଛା ଭଳି ତା ଶିଙ୍ଗକୁ ଏପରି ଭୁଷି ଦିଏ ଯେ, ବାଘ, ସିଂହଙ୍କ ପେଟ ଫୁଟିଯାଏ ।

ମା' ଜେମ୍ସ୍ ବକ୍ ଥରକେ ଗୋଟିଏ ପିଲା ଜନ୍ମ କରେ । ଜନ୍ମ ସମୟରେ ହିଁ ଛୁଆ ମୁଣ୍ଡରେ ଶିଙ୍ଗ ଦେଖାଯାଏ । ତାହା ପ୍ରାୟ ଏକଇଞ୍ଚ ଉଚ୍ଚ । ପିଲାଟିକୁ ମା' ଛ' ସାତ ମାସ ଯାଏ ଅତି ଗୋପନୀୟ ସ୍ଥାନରେ ଲୁଚେଇ ରଖେ ହିଂସ୍ର ପଶୁଙ୍କ ଦାଉରୁ ରକ୍ଷା କରିବା ପାଇଁ । ପାଖ ଆଖରେ ରହି ପହରା ଦେଉଥାଏ । ଛ' ସାତ ମାସ ହୋଇଗଲେ ତାକୁ ସଙ୍ଗରେ ଧରି ଚରିବୁଲେ । ପ୍ରାୟ ଦୁଇବର୍ଷ ହେବା ପର୍ଯ୍ୟନ୍ତ ପିଲା ମାଆର ହେପାଜତରେ ରହେ । ତା'ପରେ ସେ ସ୍ୱାଧୀନ । ଶତ୍ରୁଠାରୁ



( ଜେମ୍‌ସ୍ ବକ୍ ଶିଙ୍ଗରେ ବାଘର ମୃତ୍ୟୁ )

ଆତ୍ମରକ୍ଷା କରିବାକୁ ତାର ବଳ ଓ ସାହସ ସେତେବେଳକୁ ଯଥେଷ୍ଟ ହୋଇ ଯାଇଥାଏ ।

ଏମାନଙ୍କର ଆୟୁ ହାରାହାରି କୋଡ଼ିଏରୁ ପଚିଶ ବର୍ଷ । ମାଈ ପଶୁର ମୁଣ୍ଡରେ ଶିଙ୍ଗ ହୁଏ,ମାତ୍ର ପୁରୁଷ ଅପେକ୍ଷା ସାନ । ସେମାନଙ୍କ ଉଚ୍ଚତା ଓ ଓଜନ ମଧ୍ୟ ଅପେକ୍ଷାକୃତ କମ୍ ।

ଏମାନେ ବଣରେ ନିର୍ଭୟରେ ବୁଲନ୍ତି । ତେଣୁ ଦଳରେ ବେଶୀ ସଂଖ୍ୟାରେ ରହିବା ଦରକାର ମନେ କରନ୍ତି ନାହିଁ । ଗୋଟିଏ ଦଳରେ ଖୁବ୍ ବେଶୀ ହେଲେ ଗୋଟିଏ ପୁରୁଷ ଓ ଅନ୍ୟମାନେ ମାଈ ବା ପିଲା ।

ଚାଲିଲା ବେଳେ ଜେମ୍‌ସ୍ ବକ୍ ଘୋଡ଼ା ପରି କଦମ ପକାଏ ଏବଂ ଶଗଡ଼ ଟଣା ବଳଦଙ୍କ ପରି ମୁଣ୍ଡ ହଲଉଥାଏ । ସ୍ଥାନୀୟ ଅଧିବାସୀମାନେ ଏମାନଙ୍କୁ ଶିକାର କରିବାକୁ ସାହସ କରନ୍ତି ନାହିଁ, କି ମାରିବାକୁ ଇଚ୍ଛା କରନ୍ତି ନାହିଁ ।

●

# ବ୍ଲାକ୍ ବଫାଲୋ ବା କଳା ମଇଁଷି

ଆଫ୍ରିକାର ନିଘଞ୍ଚ ଜଙ୍ଗଲ ଭିତରେ ବହୁ କିସମର ଅରଣା ମଇଁଷି ଦେଖା ଯାଆନ୍ତି । ସେମାନଙ୍କ ମଧ୍ୟରେ ଯେ ସବୁଠାରୁ ବଡ଼ ଓ ବେଶୀ ଭୟଙ୍କର, ତାର ନାମ ସେଠାରେ ଲୋକେ ଦେଇଛନ୍ତି ବ୍ଲାକ୍ ବଫାଲୋ । ଆମ ଭାଷାରେ କଳା ମଇଁଷି ।

ଏହି ଜାତର ମଇଁଷି ସବେ୍ବାଚ୍ଚ ଅଣିଗ୍ ମଇଁଷିମାନଙ୍କ ଉଚ୍ଚତା ଛ'ଫୁଟ ପର୍ଯ୍ୟନ୍ତ ହୁଏ । ସମୟ ସମୟରେ ଏହାଠାରୁ ବେଶୀ ଉଚ୍ଚର ମଇଁଷି ମଧ୍ୟ ଦେଖା ଯାଆନ୍ତି । ତାର ଦେହ ଯେପରି ବଳିଷ୍ଠ ଓ ଦୃଢ଼, ମୁଣ୍ଡର ଶିଙ୍ଗ ଦୁଇଟା ଓ ଆଖି ଯୋଡ଼ାକ ସେହିପରି ଭୀଷଣ ଓ ଭୟପ୍ରଦ । ଯେ କେହି ଲୋକ ତା ମୁହଁକୁ ହଠାତ୍ ଚାହିଁଦେଲେ ମୂର୍ଚ୍ଛା ହୋଇଯିବ ।

ତେଣୁ କଳା ମଇଁଷିର ଶିକାର କରିବାକୁ ଗଲେ କୋଡ଼ିଏ ପଚିଶ ଜଣ ଖୁବ୍ ସାହସୀ ଶିକାରୀ ଦଳବାନ୍ଧି ଯାଆନ୍ତି । ଶିକାର ହେଉ ବା ନ ହେଉ, ଗଲାବେଳେ ଦଳରେ ଯେତେ ଲୋକ ଥାଆନ୍ତି, ଫେରିବା ବେଳକୁ ସେମାନଙ୍କ ମଧ୍ୟରୁ ଚାରି ପାଞ୍ଚଜଣ ନିଶ୍ଚୟ କମିଯାଇ ଥାଆନ୍ତି ।

ନିବିଡ଼ ଜଙ୍ଗଲ ଭିତରେ ଏମାନେ ଦଳବାନ୍ଧି ରହନ୍ତି । ଯଥେଷ୍ଟ ପାଣି ମିଳିବାର ସୁବିଧା ଥିବ, ସନ୍ତସନ୍ତିଆ ଘାସ ବୁଦା, ଲତାପତ୍ର ଯଥେଷ୍ଟ ମିଳୁଥିବ, ସେହି ସ୍ଥାନ ହିଁ ତାଙ୍କର ବାସସ୍ଥାନ । ଜଙ୍ଗଲ ବାହାରେ ସମତଳ ବା ପଦା ଅଞ୍ଚଳରେ ସେମାନଙ୍କର ଦେଖା କମ୍ ମିଳେ ।

ଗୋଟିଏ ଗୋଟିଏ ପଶୁଙ୍କ ଦେହରୁ ପନ୍ଦର ଶହ ପାଉଣ୍ଡ ପର୍ଯ୍ୟନ୍ତ ମାଂସ ମିଳେ । ଚମଡ଼ା ମୋଟା ଓ ଟାଣ । ମାଂସକୁ ମାସ ମାସ ଧରି ଖାଇବା ଏବଂ ଚମଡ଼ାକୁ ବହୁତ ଦାମରେ ବିକିବା ଲୋଭରେ ସେଠାର ଆଦିମ ଅଧିବାସୀମାନେ ଏହାକୁ ଶିକାର କରିବାକୁ ଲାଳାୟିତ ହୁଅନ୍ତି ।

ଏମାନଙ୍କ ଶିଙ୍ଗ ଖୁବ୍ ଝାଣ ଓ ମୁନଆଁ । ମୁଣ୍ଡର ଠିକ୍ ମଧ୍ୟ ଭାଗରୁ ଶିଙ୍ଗ ଦୁଇଟି ବାହାରି ଦୁଇ ପାଖକୁ ଲମ୍ବି ଯାଇଥାଏ । କିଛି ଅଂଶ ବଢ଼ିଗଲା ପରେ ତଳକୁ ବଙ୍କେଇ ଯାଏ । ତା' ପରେ ଅର୍ଦ୍ଧ ବୃତ୍ତାକାରରେ ଉପରକୁ ଉଠିଯାଏ । ପ୍ରତ୍ୟେକ ଶିଙ୍ଗ ଦୁଇ ଫୁଟ ବା ତହିଁରୁ ଅଧିକ ଲମ୍ବ ।

ଶିଙ୍ଗ ତୁଳନାରେ ମୁଣ୍ଡ ସାନ; ମାତ୍ର ଆଖି ଦୁଇଟା ବଡ଼ ଓ ତେଜସ୍ୱାନ୍ ।

ଏମାନେ ସାଧାରଣତଃ ଭୋର-ସୂର୍ଯ୍ୟୋଦୟ ପୂର୍ବରୁ ଓ ସନ୍ଧ୍ୟା-ସୂର୍ଯ୍ୟାସ୍ତ ପରେ ବୁଲି ଖାଦ୍ୟ ଅନ୍ୱେଷଣ କରନ୍ତି । ସୂର୍ଯ୍ୟ ଥିବା ସମୟତକ ସନ୍ତସନ୍ତିଆ ଜାଗା ବା ପାଣି କାଦୁଅରେ ଶୋଇ ରହନ୍ତି ।



( କଳା ମଇଁଷି )

ବ୍ଲାକ୍ ବଫାଲୋ ଗୋଟିଏ ନିରୀହ ଓ ଶାନ୍ତିପ୍ରିୟ ପଶୁ । ମାତ୍ର ସେମାନଙ୍କ ଉପରେ କେହି ଆକ୍ରମଣ କଲେ ବା ବିପଦର ଆଶଙ୍କା ପାଇଲେ ଅତ୍ୟନ୍ତ ଭୟଙ୍କର ହୋଇ ଉଠନ୍ତି । ଅତି ବେଶୀ ପ୍ରତିହିଂସା-ପରାୟଣ। ଶତ୍ରୁର ସର୍ବନାଶ ନ କରିବା ପର୍ଯ୍ୟନ୍ତ ଶାନ୍ତ ପଡ଼ନ୍ତି ନାହିଁ ।

ସିଂହ ଏହାର ମାଂସ ଖାଇବାକୁ ଭଲପାଏ । ମାତ୍ର ଶିଙ୍ଗ ଉପ୍ସ୍ତରେ ପାଖ ପଶିପାରେ ନାହିଁ । ତ୍ରୁଆ ବା ମାଈ ମଇଁଷି ଶିକାର କରିବାକୁ ଡ଼ର ଉଣ୍ଡି ବୁଲେ । କାରଣ ସେମାନଙ୍କ ମୁଣ୍ଡରେ ଏପରି ବିପଦଜନକ ଅସ୍ତ୍ର ନ ଥାଏ ।

ବ୍ଲାକ୍ ବଫାଲୋର ପରମାୟୁ ହାରାହାରି ଷୋଳ ସତର ବର୍ଷ । ମା ବଫାଲୋ ପ୍ରାୟ ଦୁଇବର୍ଷରେ ଗୋଟିଏ ପିଲା ଜନ୍ମ କରିଥାଏ । ମାତ୍ର କେତୁଟା ମାସ ଭିତରେ ଛୁଆ ବେଶ୍ ସବଳ ହୋଇଉଠେ । ଆଉ ମା ଉପରେ ନିର୍ଭର ନ କରି ସେ ତା ଖାଦ୍ୟ ଅନ୍ୱେଷଣରେ ବାହାରି ପଡ଼େ ।

ସିଂହ ଏବଂ ତା'ଠାରୁ ବଳି ହିଂସ୍ର ମନୁଷ୍ୟର ଗୁଳିରେ ଏମାନଙ୍କ ସଂଖ୍ୟା ଦିନକୁ ଦିନ କମି ଯାଉଛି । ତେଣୁ ଆଫ୍ରିକା ମହାଦେଶର କେତେକ ରାଜ୍ୟରେ ସରକାର କଳା ମଇଁଷି ଶିକାର କଡ଼ାକଡ଼ି ଭାବରେ ନିଷେଧ କଲେଣି ।

ଜଣେ ଶିକାରୀ ତାଙ୍କ ଅଭିଜ୍ଞତା ବର୍ଣ୍ଣନା କରି ଲେଖିଛନ୍ତି—

ଆମ ଦଳ ଜଙ୍ଗଲକୁ ଶିକାର କରିବାକୁ ଯାଇଥିଲୁ । ସ୍ଥାନୀୟ ଅଧିବାସୀ କେତେକ ଅନୁଚରଙ୍କ ପାଲରେ ପଡ଼ି ସେଦିନ ବ୍ଲାକ୍ ବଫାଲୋ ଶିକାର କରିବା ଆମର ଲକ୍ଷ୍ୟ ରହିଲା । ବଣରେ ବୁଲୁ ବୁଲୁ ଆମ ଭିତରୁ ଜଣେ ଶିକାରୀ ଦଳଛଡ଼ା ହୋଇ ଅନ୍ୟ ଦିଗରେ ଚାଲିଗଲେ । ବହୁତ ଖୋଜିଲୁ, ମାତ୍ର ସନ୍ଧାନ ମିଳିଲା ନାହିଁ । ଅନ୍ଧାର ରାତି ମାଡ଼ି ଆସିବାରୁ ଗୋଟିଏ ନିରାପଦ ସ୍ଥାନରେ ବିଶ୍ରାମ ନେଲୁ । ପରଦିନ ସକାଳୁ ପୁଣି ଅନୁସନ୍ଧାନ ଚାଲିଲା ।

ବହୁ ସମୟ ପରେ ତାଙ୍କର ଦେଖା ମିଳିଲା । ଗୋଟିଏ ବଡ଼ ଝଙ୍କାଳିଆ ଗଛ ଅଗରେ ବସି ଗଛକୁ ଦୁଇ ହାତରେ କୁଣ୍ଢାଇ ଧରିଛନ୍ତି । ଗଛମୂଳେ ଗୋଟାଏ ବଡ଼ କଳା ମଇଁଷି ଉପରକୁ ଚାହିଁ ଠିଆ ହୋଇଛି । ଲାଞ୍ଜ ହଲାଇ, ଚାରି ଗୋଡ଼ କଚାଡ଼ି ଏକ ପ୍ରକାର ନୃତ୍ୟ କରୁଛି ।

ପଛରୁ ଏକ ସମୟରେ ଛତୋଟି ବନ୍ଧୁକରୁ ଗୁଳି ଫାଏର ହେଲ । ରାକ୍ଷସ ଭଳି ସେହି ବଳିଷ୍ଠ ପଶୁଟି ସଙ୍ଗେ ସଙ୍ଗେ ଟଳି ପଡ଼ିଲା । ଶିକାରୀଙ୍କୁ ଧରାଧରି କରି ଗଛ ଉପରୁ ତଳକୁ ଆଣିଲୁ । ଦେଖାଗଲା ତାଙ୍କ ପାଦ ଦୁଇଟିରେ ଚମ କି ମାଂସ ନାହିଁ ।

ତାଙ୍କଠାରୁ ଶୁଣିଲୁ, "ଏହାକୁ ଦେଖି ଗୁଳି ଫାଏର କରିବାକୁ ଚେଷ୍ଟା କଲି । ଘୋଡ଼ା ଟିପିଲି ମୁହୂର୍ତ୍ତରେ ଏ ବୁଲିପଡ଼ି ଆଗକୁ ଚାହିଁଦେଲା । ଗୁଳି ତା ମୁଣ୍ଡରେ ହିଁ ବାଜିଲା । ସେ ଉତ୍ତ୍ୟକ୍ତ ହୋଇ ମୋ ଆଡ଼କୁ ଧାଇଁ ଆସିଲା । ମୁଁ ଅନ୍ୟ କିଛି ଉପାୟ ନ ଦେଖି ଏ ଗଛରେ ଚଢ଼ିଗଲି । ସେ ଆସି ଗଛକୁ ମୁଣ୍ଡିଆ ମାରିଲା । ଗଛ ଏତେ ଜୋରରେ ଦୋହଲିଲା ଯେ, ପଡ଼ିଯିବାର ଆଶଙ୍କା କରି ଦୁଇ ହାତରେ ଡାଳକୁ କୁଣ୍ଢାଇ ଧରିଲି ।

ଭୂଇଁ ଛଅଥର ମୁଣ୍ଡିଆ ମାରି ସାରିଲା ପରେ ପଶୁଟି ମୋ ପାଖକୁ ମୁହଁ ବଢ଼ାଇଲା । ଆଗ ଦୁଇଗୋଡ଼ ଗଛରେ ଭରା ଦେଇ ପଛ ଦୁଇ ଗୋଡ଼ରେ ଠିଆ ହୋଇଗଲା । ସେଥିରେ ମୁହଁ ନ ପାଇବାରୁ ଲମ୍ବା ଜିଭ ବଢ଼ାଇ ପାଦକୁ ଚାଟିବାକୁ ଲାଗିଲା । ଶିରିଷ କାଗଜ ଭଳି ଜିଭରେ ପାଦର ଚମ, ମାଂସ ସବୁ ମିଳେଇଗଲା । ସେଥିରେ ମଧ୍ୟ ତାର ରାଗ ଥଣ୍ଡା ପଡ଼ିଲା ନାହିଁ । ରାତିଯାକ ଗଛମୂଳେ ଠିଆ ହୋଇ ମୋତେ ଚାହିଁ ରହିଥିଲା ।"

ଯା'ହେଉ ଶିକାର ତ ଆମ ହାତରେ ମଲା । ତା ସଙ୍ଗେ ସଙ୍ଗେ ଆମ ବନ୍ଧୁ ଶିକାରୀ ମଧ୍ୟ ସେ ଶିକାରର ଶିକାର ହେଲା । ପାଦ ଦୁଇଟି ଖଣ୍ଡିଆ ହୋଇ ଯାଇ ଥିବାରୁ ରାତିଯାକ ଏତେ ରକ୍ତସ୍ରାବ ହୋଇଥିଲା ଯେ, ତାର ସମଗ୍ର ଶରୀର ଏକା ବେଳକେ ରକ୍ତ ଶୂନ୍ୟ ହୋଇ ଯାଇଥିଲା । ମାତ୍ର କେତେ ଘଣ୍ଟା ପରେ ତାର ପ୍ରାଣବାୟୁ ଉଡ଼ିଗଲା ।

ଆମ ଦେଶର ମଇଁଷିମାନଙ୍କ ଶିଙ୍ଗ ମଧ୍ୟ ଗୋଟିଏ ଆକର୍ଷଣୀୟ ଦୃଶ୍ୟ ।

ବଣ ଜଙ୍ଗଲରେ ବାସ କରୁଥିବା ମଇଁଷିଙ୍କୁ "ଅରଣା ମଇଁଷି" କୁହାଯାଏ । ଏମାନେ ଯେପରି ବଳବାନ୍, ସେହିପରି କ୍ରୋଧୀ । ଶିଙ୍ଗ



( ଅରଣା ମଇଁଷି )

ଓ ମୁଣ୍ଡ ଅତି ଟାଣ । ବିପଦର ଆଶଙ୍କା କଲେ ଭୀଷଣ ହୋଇ ଉଠନ୍ତି । ବଣରେ ସବୁ ସମୟରେ ଦଳବାନ୍ଧି ବୁଲୁଥିବାରୁ ମହାବଳ ବାଘ ମଧ୍ୟ ଏମାନଙ୍କ ପାଖ ପଶିପାରେ ନାହିଁ ।

ସମୟ ସମୟରେ ସମ୍ବାଦ ମିଳେ, ଅରଣା ମଇଁଷି ମୁଣ୍ଡିଆରେ ଚଳନ୍ତି ରେଳଗାଡ଼ର ଇଞ୍ଜିନ୍ ଭାଙ୍ଗି ଯାଇଛି । ଦୁଇ ତିନିଟା ଡବା ତଳକୁ ଖସି ପଡ଼ିଛି ।

ସେଥିପାଇଁ ପିଲମାନଙ୍କୁ ସାବଧାନ କରା ଯାଇଥାଏ—

"ଅରଣା ମଇଁଷି ରହିଛି ଅନାଇ
ମଇଁଷିର ପାଖ ନ ଯାଅ ଦନାଇ ।"



# ହାର୍ଟେବେଷ୍ଟ ହରିଣ

ଆଫ୍ରିକାର ସାହାରା ମରୁଭୂମି ଓ ତା ଆଖପାଖ ଜଙ୍ଗଲରେ ଗୋଟିଏ ସାନ ଜାତିର ହରିଣ ବାସ କରନ୍ତି । ସ୍ଥାନୀୟ ଲୋକେ ସେମାନଙ୍କ ନାମ ଦେଇଛନ୍ତି "ହାର୍ଟେବେଷ୍ଟ" ।

ଏହି ପଶୁଟି ପ୍ରାୟ ସାଢ଼େ ତିନିଫୁଟ ଉଚ୍ଚ ହୁଏ । ଅଥଚ ଲମ୍ବରେ ପାଞ୍ଚଫୁଟ ପର୍ଯ୍ୟନ୍ତ । ପାତଳା ଶରୀର, ଲାଞ୍ଜ ଗ୍ରେଟ, ମୁହଁ ଲମ୍ବା ଓ ସରୁ । ମୁଣ୍ଡର ଶିଙ୍ଗ ଦୁଇଟିର ଗଠଣ ବଡ଼ିଆ ଧରଣର । ପ୍ରଶ୍ନବାଚୀ ବାକ୍ୟ ଶେଷରେ ଆମେ ଯେଉଁ ପ୍ରଶ୍ନ ଚିହ୍ନ ଦେଉ, ତାକୁ ଓଲଟାଇ ଦେଲେ ଯେପରି ହେବ, ଶିଙ୍ଗ ସେହି ଆକାର ଧରିଥାଏ ।



( ହାର୍ଟେବେଷ୍ଟ ହରିଣ )

ଦେହ ଲୋମହୀନ ଓ ଗୋଡ଼ ଗୁଡ଼ିକ ଲମ୍ବା । ତେଣୁ ହାର୍ଟେବେଷ୍ଟ ଏତେ ଶୀଘ୍ର ଧାଇଁପାରେ ଯେ, କୌଣସି ଶିକାରୀ ତା ଉପରେ ଆକ୍ରମଣ କରି ପାରନ୍ତି ନାହିଁ ।

ଜୀବଟି ଅତି ଶାନ୍ତ ଓ ନିରୀହ । କେହି ଆକ୍ରମଣ କଲେ ମଧ୍ୟ ଆତ୍ମରକ୍ଷା ପାଇଁ ପ୍ରତି ଆକ୍ରମଣର ଉଦ୍ୟମ ସେ କରେ ନାହିଁ । କେବଳ ଦ୍ରୁତ ଗତିରେ ପଳାଇ ଯାଏ । ସେହି ଗୋଡ଼ ଗୁଡ଼ିକ ସବୁ ପ୍ରକାର ବିପଦରୁ ତାକୁ ରକ୍ଷା କରନ୍ତି ।

ଦଉଡ଼ିବାକୁ ଆରମ୍ଭ କଲେ ଏ ପ୍ରଥମେ ଖୁବ୍ ଉଚ୍ଚରେ କଦମ ପକାଏ । ତା'ପରେ ପଛ ଦୁଇ ଗୋଡ଼ରେ ଧୂଳି ଉଡ଼ାଇ ଖୁବ୍ ବେଗରେ ଧାଏଁ । ପଛ ଗୋଡ଼ର ଧୂଳି ପଟଳ ଶିକାରୀକୁ ଅନ୍ଧ କରିଦିଏ । ତେଣୁ ଶିକାରୀ ବେଶୀ ଦୂର ତା' ପଛରେ ଗୋଡ଼ାଇ ପାରେ ନାହିଁ । ମୁହୂର୍ତ୍ତକ ମଧ୍ୟରେ ହାର୍ଟେବିଷ୍ଟ ନିଜକୁ ଏପରି ଗୋପନ କରି ରଖେ ଯେ, ଶିକାରୀ ଶେଷକୁ ନିରାଶରେ ଫେରେ ।

ଆଗେ ଏମାନଙ୍କ ସଂଖ୍ୟା ବହୁତ ବେଶୀ ଥିଲା । କାହାର କିଛି କ୍ଷତି କରୁ ନ ଥିବାରୁ ସ୍ଥାନୀୟ ଲୋକେ ଏହାକୁ ଆଦର କରୁଥିଲେ । ମାତ୍ର ଇଉରୋପୀୟମାନେ ଆଫ୍ରିକା ଗଲା ପରେ ବହୁ ପରିମାଣରେ ଏମାନଙ୍କୁ ହତ୍ୟା କଲେ । କ୍ରମେ ଏମାନଙ୍କ ବଂଶ ଲୋପ ପାଇଯିବାକୁ ବସିଲା ।

ଏବେ ସ୍ଥାନୀୟ ସରକାର ଏହାକୁ ଶିକାର କରିବା କି ଧରି ଆଣି ପୋଷିବା ନିଷିଦ୍ଧ କରି ଦେଇଛନ୍ତି ।



# ପାହାଡ଼ୀ ମେଣ୍ଢା—ଉଦାଦ୍‌

ଛେଳି ଓ ମେଣ୍ଢା ଆମର ଅପରିଚିତ ନୁହନ୍ତି । ପ୍ରତ୍ୟେକ ଗାଁ ଗଣ୍ଡାରେ ଅଧିକାଂଶ ଲୋକ ଏମାନଙ୍କୁ ପୋଷନ୍ତି । ଗାଈ ଗୋରୁ ଯେପରି ଆମର ଧନ ରୂପେ ପରିଗଣିତ ହୁଏ, ଛେଳି ଓ ମେଣ୍ଢା ସେହିପରି ଗୋଟିଏ ଧନ ଓ ରୋଜଗାରର ସମ୍ପତ୍ତି ରୂପେ ଗଣ୍ୟ କରାଯାଏ । ମଫସଲର ଗରିବ ଲୋକଙ୍କ ଆର୍ଥିକ ଉନ୍ନତି ପାଇଁ ସରକାର ସେମାନଙ୍କୁ ଛେଳି ମେଣ୍ଢା ସବୁ ଋଣ ସୂତ୍ରରେ ଦେବାର ବ୍ୟବସ୍ଥା କରିଛନ୍ତି ।

ମାତ୍ର ଅ୍ଫ୍ରିକା ଏବଂ ଏସିଆର ସୁଉଚ୍ଚ ହିମାଳୟ ପର୍ବତ, ତିବ୍ବତ ଓ ତାର ଆଖପାଖ ଅଞ୍ଚଳର ଜଙ୍ଗଲରେ ଅତି ଅଦ୍ଭୁତ ରକମର ଛେଳି ମେଣ୍ଢା ଅଛନ୍ତି । ସେମାନଙ୍କୁ ଦେଖିବାର ସୌଭାଗ୍ୟ ଅତି ଅଳ୍ପ ଲୋକ ପାଇଥାନ୍ତି ।

ହିମାଳୟ ପର୍ବତର ଦଶ ହଜାର ଫୁଟରୁ ସତର ହଜାର ଫୁଟ ଉଚ୍ଚରେ ଗୋଟିଏ ଜାତିର ମେଣ୍ଢାଦଳ ଦେଖା ଯାଆନ୍ତି । ତିବ୍ବତୀୟଙ୍କ ଭାଷାରେ ସେମାନଙ୍କ ନାମ ହେଉଛି ଆଉଦାଦ ବା ଉଦାଦ ମେଣ୍ଢା । ଏମାନଙ୍କ ଦେହର ରଙ୍ଗ ନେଳୀ ଏବଂ ଉଚ୍ଚତା ଦୁଇ ଫୁଟରୁ ତିନ ଫୁଟ ପର୍ଯ୍ୟନ୍ତ । ଏମାନଙ୍କର ଲାଞ୍ଜ ନଥାଏ । ପିଚ୍ଛ ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଲମ୍ବ ପ୍ରାୟ ତିନ ଫୁଟ ଛ ଇଞ୍ଚ ।

ଏମାନଙ୍କ ମୁଣ୍ଡର ଶିଙ୍ଗ ଦୁଇଟିକୁ ହିଁ ଲକ୍ଷ୍ୟ କରିବାର କଥା । ତାହା ଅତି ମୋଟା ଓ ଖୁବ୍‌ ଟାଣ । ମୁଣ୍ଡର ଦୁଇ ପାଖରୁ ଏହା ବାହାରି ଅଗ ଆଡ଼କୁ ତଳମୁହାଁ ହୋଇ ବଙ୍କେଇ ଯାଇଥାଏ । ଆଗ ସରୁ । ଏହି ଶିଙ୍ଗଗୁଡ଼ିକ ପ୍ରାୟ ଅଢ଼େଇ ଫୁଟ ଲମ୍ବ ହୋଇଥାଏ ।

ଆମର କଥା ଅଛି—"ମେଣ୍ଢା ମୁଣ୍ଡ ବଡ଼ ଟାଣ, ତା' ମୁଣ୍ଡିଆକୁ ସାବଧାନ ।" ସେହି କଥା ଏମାନଙ୍କ ପ୍ରତି ଅତି ବେଶୀ ପ୍ରଯୁଜ୍ୟ ।

ଶୀତ ଅଞ୍ଚଳ ତ ଏମାନଙ୍କ ଘର । ତେଣୁ ପ୍ରକୃତି ଏମାନଙ୍କ ଚମକୁ ଅତି ମୋଟ କରିଛି ଓ ସର୍ବାଙ୍ଗରେ ବହଳ ଲୋମ ଦେଇଛି ।



( ପାହାଡ଼ୀ ମେଣ୍ଢା—ଉଦାଦ )

ଏମାନେ ରାତିଯାକ ପର୍ବତର ଗୁମ୍ଫା ମାନଙ୍କରେ ବିଶ୍ରାମ ନିଅନ୍ତି । ସକାଳ ହେଲେ ଦଳବାନ୍ଧି ଘାସ ଚରିବାକୁ, ଡାଳପତ୍ର ଖାଇବାକୁ ପଦାକୁ ବାହାରନ୍ତି । ଗୋଟିଏ ଗୋଟିଏ ଦଳରେ ଆଠ ଦଶ ଗୋଟିରୁ ପଚିଶଟା ପର୍ଯ୍ୟନ୍ତ ଥାଆନ୍ତି । ଦଳର ଯେ ସର୍ଦ୍ଦାର, ସେ ନିରାପଦ ଓ ଗୋପନୀୟ ସ୍ଥାନ ଦେଖି ଲୁଚି ରହେ । କେଉଁ ଦିଗରୁ ଶତ୍ରୁ ଆସୁଛି କି ନାହିଁ, ତାହା ହିଁ ସେ ଲକ୍ଷ୍ୟ କରୁଥାଏ । ଦଳର ଅନ୍ୟମାନେ ନିଶ୍ଚିନ୍ତ ମନରେ ଆନନ୍ଦରେ ବୁଲି ବୁଲି ଘାସ ଚରନ୍ତି । ବିପଦର ସୂଚନା ପାଇଲେ ସର୍ଦ୍ଦାର ଏପରି ଏକ ଶବ୍ଦ କରେ ଯେ, ଚରି ବୁଲୁଥିବା ଉଦାଦମାନେ ନିକଟବର୍ତ୍ତୀ ଗୁମ୍ଫାମାନଙ୍କରେ ଲୁଚି ଯାଆନ୍ତି । ଶିକାରୀ ଯେତେ ପରିଶ୍ରମ କଲେ ବି ସେମାନଙ୍କର ସନ୍ଧାନ ପାଏ ନାହିଁ ।

ଦଳର ସର୍ଦ୍ଦାର ବା ପୁରୁଷ ଉଦାଦର ମୁହଁ ଦେଖାଯାଏ ଆମ ପ୍ରବୀଣ ବର୍ଷିତ ମୁନି ଋଷିମାନଙ୍କ ମୁହଁ ପରି ।



( ଦଳର ସର୍ଦ୍ଦାର ଅଣ୍ଡିରା ଉଦାଦ )

ସାଧାରଣତଃ ଏମାନେ ଖୁବ୍ ବଳବାନ ଓ ଚତୁର । ଦଳକୁ ନିରାପଦରେ ରକ୍ଷା କରିବା ତାର ଦାୟିତ୍ୱ । ସେ ଦାୟିତ୍ୱ ସେ ନିଷ୍ଠାର ସହିତ ପାଳଥାଏ ।

ଛେଳି ମେଣ୍ଢା ଜାତୀୟ ଜୀବମାନଙ୍କ ମଧ୍ୟରେ ପୁରୁଷ ଉଦାଦ ସବୁଠାରୁ ବଡ଼ ହୋଇଥାଏ । ତାର ଚାହାଣୀ ଯେପରି ତେଜସ୍ୱୀନ୍ ସେହିପରି ଗାମ୍ଭୀର୍ଯ୍ୟପୂର୍ଣ୍ଣ ଦେଖାଯାଏ । ପାହାଡ଼ର ମୁଣ୍ଡିଆ ଉପରେ ଠିଆ ହୋଇ ସେ ଚାରିଆଡ଼କୁ ମୁହଁ ବୁଲାଇଲେ, ତା' ଠାରୁ ଅତି ଅଧିକ ବଳବାନ୍ ଜନ୍ତୁର ବି ମନରେ ଆତଙ୍କ ଖେଳିଯାଏ ।

ମା' ଉଦାଦ ଥରକେ ଦୁଇଟି ପିଲା ଜନ୍ମ କରେ । ପ୍ରାୟ ଛ' ମାସ ହେବା ଯାଏ ସେମାନଙ୍କୁ କ୍ଷୀର ଦିଏ ଏବଂ ହେପାଜତରେ ରଖେ । ତା'ପରେ ପିଲାମାନେ ସ୍ୱାଧୀନ ହୋଇଯାନ୍ତି ।

ପାଖଆଖ ଅଞ୍ଚଳର ଲୋକେ ଏବଂ ତଲ୍ଲିଚବାସୀ କେହି କେହି ଜିବାଦ ଘରେ ପୋଷିଥିବାର ଦେଖାଯାଏ । ସେମାନେ ବହୁ ପରିଶ୍ରମ କରି ଅତି ପିଲାବେଳୁ ସେମାନଙ୍କୁ ସଂଗ୍ରହ କରିଥାନ୍ତି । ମାତ୍ର ଘରେ ପୋଷା ମାନି ରହିଲେ, ସେମାନେ ବେଶୀ ଦିନ ବଞ୍ଚନ୍ତି ନାହିଁ କି ସେମାନଙ୍କର ପୂର୍ବ ତେଜ ରହେ ନାହିଁ । ସ୍ୱାଧୀନ ଭାବରେ ପ୍ରକୃତି କୋଳରେ ବଢ଼ିଥିବା ପ୍ରାଣୀକୁ ଯେତେ ଯତ୍ନ କରି ପାଳିଲେ ମଧ୍ୟ, ସେ ତାର ସ୍ୱାଧୀନତାକୁ ଅହରହ ଝୁରି ହେଉଥାଏ ।



# ଗାଈଗୋରୁଙ୍କ ପୂର୍ବପୁରୁଷ 'ଉରୁସ୍'

'ଉରୁସ୍' ହେଉଛନ୍ତି ଆମ ଘରେ ରହୁଥିବା ଗାଈଗୋରୁଙ୍କ ପୂର୍ବପୁରୁଷ ।

ଘରେ ପୋଷା ମାନି ରହୁଥିବା ଗାଈଗୋରୁ ସବୁ ମନୁଷ୍ୟ ସଂସ୍ପର୍ଶରେ ଆସି ଦୁର୍ବଳ ଓ ଶାନ୍ତ ଶିଷ୍ଟ ହୋଇ ଗଲେଣି । ତେଣୁ ଆମେ ତାଙ୍କୁ କ୍ରୀତଦାସ ଭଳି କାମରେ ଖଟାଉଛୁ । ମାତ୍ର ସେମାନଙ୍କ ପୂର୍ବ ପୁରୁଷ ଏଭଳି ପୋଷା ବା ନିରୀହ ନ ଥିଲେ । ହଜାର ହଜାର ବର୍ଷ ତଳେ ଯେଉଁ ଗାଈଗୋରୁ ଥିଲେ, ସେମାନେ ଖୁବ୍ ବଳିଷ୍ଠ, ଦୁର୍ଦ୍ଦାନ୍ତ ଓ ନିଷ୍ଠୁର ଥିଲେ ।



( ଉରୁସ୍ )

ଉତ୍ତର ଆଫ୍ରିକାର ପାହାଡ଼ ପର୍ବତ ଘେରା ନିଘଞ୍ଚ ଜଙ୍ଗଲ ମଧ୍ୟରେ ଏବେ ମଧ୍ୟ ସେମାନେ ଅଛନ୍ତି । ସେ ଅଞ୍ଚଳର ଲୋକେ ତାଙ୍କ

ନାମ ଦେଇଛନ୍ତି 'ଓରୁସ୍' ବା 'ଅଓରସ୍' । ଇଜିପ୍ଟ୍, ମରକ୍କୋ, ଆଲ୍‌ଜେରିଆ ପ୍ରଭୃତି ଦେଶର ଜଙ୍ଗଲ ମଧ୍ୟରେ ଏମାନଙ୍କର ଦେଖା ମିଳୁଥିଲା । ମାତ୍ର କାଳକ୍ରମେ ଏମାନେ ଅଦୃଶ୍ୟ ହୋଇ ଗଲେଣି । ଆଫ୍ରିକା ଜଙ୍ଗଲରେ ଯେଉଁ ସାମାନ୍ୟ କେତେକ ଦେଖା ଯାଆନ୍ତି, ସେମାନେ ଯେ ଆଉ କେତେ ବର୍ଷ ମଧ୍ୟରେ ଲୋପ ପାଇଯିବେ—ଜୀବବିଜ୍ଞ ପଣ୍ଡିତମାନେ ଏହା ଗଣନା କରି କହି ସାରିଲେଣି ।

ଏହି ପ୍ରାଣୀର ଉଚ୍ଚତା ଗୋଡ଼ ଖୁରାଠାରୁ ପିଠି ପର୍ଯ୍ୟନ୍ତ ପ୍ରାୟ ତିନିଫୁଟ ଏବଂ ଲାଞ୍ଜ ମୂଳଠାରୁ ମୁଣ୍ଡ ପର୍ଯ୍ୟନ୍ତ ଦୈର୍ଘ୍ୟ ପାଞ୍ଚଫୁଟ । ଲାଞ୍ଜ ଅଗରେ ନେଞ୍ଚାଏ ବହଳ କଳା ବାଳ । ଆମ ଗାଈ ଗୋରୁ ବା ଷଣ୍ଢଙ୍କ ପରି ସେମାନଙ୍କ ପିଠିରେ କାନ୍ଧ ପାଖରେ ଚୂଳ ନ ଥାଏ । ସମସ୍ତ ପିଠିଟା ସିଧା ଜର୍ସି ଗାଈର ପିଠି ପରି । ଜର୍ସି ଗାଈ ତାଙ୍କର ବଂଶଧର ।

ଏହି ପଶୁର ବିଶେଷତ୍ୱ ହେଉଛି, ମୁଣ୍ଡର ଶିଙ୍ଗ ଦୁଇଟା ସିଧା ସଳଖ ଆଗକୁ ରହିଥାଏ । ଅଗ ନିତାନ୍ତ ମୁନିଆଁ । ଆଗରେ ଯେ ପଡ଼ିବ, ତାକୁ ସେ ଶିଙ୍ଗରେ ଭୂଷି ଅକ୍ଳେଶରେ ମାରିଦେଇ ହେବ ।

ଶିଙ୍ଗ ଦୁଇଟା ପ୍ରାୟ ଫୁଟେ ଲେଖାଏଁ ଲମ୍ବ । ତାହା ପୁଣି ଅତି ଟାଣ ।

ଦେହ ଧଳା ଲୋମରେ ଆବୃତ । ଛୋଟ ଛୋଟ ବହଳ ଲୋମ । ଆଖି ଓ କାନ ମୁହଁ ତୁଳନାରେ ଛୋଟ ଦେଖାଯାଏ ।

ସେମାନେ ସବୁ ସମୟରେ ନିଘଞ୍ଚ ଜଙ୍ଗଲ ଭିତରେ ରହିଥାନ୍ତି । ପଦାକୁ କ୍ୱଚିତ ବାହାରନ୍ତି । ଦିନଯାକ ବଣରେ ବୁଲି ଘାସ ଚରନ୍ତି; ସଂଧ୍ୟା ହେବା ମାତ୍ରକେ ନିରାପଦ ସ୍ଥାନରେ ଆଶ୍ରୟ ନିଅନ୍ତି ।

ମା' ଥରକେ ଗୋଟିଏ ପିଲା ଜନ୍ମ କରେ ।

ଓରୁସ୍‌ର ମାଂସ ସିଂହମାନଙ୍କର ପ୍ରିୟ ଖାଦ୍ୟ । ମାତ୍ର ସହଜରେ ଆକ୍ରମଣ କରିବା ସିଂହ ପକ୍ଷରେ ସମ୍ଭବ ହୁଏ ନାହିଁ । ଏକାଧିକ ଓରୁସ୍ ଦେଖିଲେ, ସେ ସ୍ଥାନ ଛାଡ଼ି ସିଂହ ପଳାଇ ଯାଏ । ଯେତେବେଳେ

ଏକୁଟିଆ ପାଏ, ତା' ଉପରେ ଆକ୍ରମଣ କରିବାକୁ ଚେଷ୍ଟା କରେ । ଆଗକୁ ଆସିବାକୁ ପ୍ରାଣାନ୍ତକ ଭୟ । ଛକ ଛକ ପଛ ପାଖରେ କୁଦ୍ଧ ତା' ପିଠି ଉପରେ ଚଢ଼ିଯାଏ । ବେକ କଣା କରି ରକ୍ତ ପିଏ । ଶିକାର ଦୁର୍ବଳ ହୋଇ ତଳେ ପଡ଼ିଗଲେ, ମାଂସ ଖାଏ ।

ଉରୁସ୍ ତୃଣଭୋଜୀ ପ୍ରାଣୀ—ଶାନ୍ତ ଓ ଭଦ୍ର । ବିପଦର ଆଶଙ୍କା ନ ପାଇଲେ, ସେ କାହାର କୌଣସି କ୍ଷତି କରେ ନାହିଁ ।

ସମୟ ସମୟରେ ଦୁଇ ପୁରୁଷ ଉରୁସ୍‌ଙ୍କ ମଧ୍ୟରେ ଯୁଦ୍ଧ ଲାଗେ । ଷଣ୍ଢ ଲଢ଼େଇ ପରି ମୁଣ୍ଡକୁ ମୁଣ୍ଡ ପିଟି ଗୋଟିଏ ଅନ୍ୟଟିକୁ ଆଘାତ କରେ । ମାତ୍ର ତାଲ ଦେଖି ବେଳେ ଏପରି କୌଶଳରେ ମୁଣ୍ଡ ପିଟେ, ଯେପରିକି ପ୍ରତିଦ୍ୱନ୍ଦ୍ୱୀର ଶିଙ୍ଗ ନିଜ ଆଖି କମ୍ବା ଗଳାରେ ଫୁଟି ନଯାଏ ।



# ୟୃକ୍ ବା ଚମରି ଗାଈ

ଗାଈ ଗୋରୁ ବଂଶର ଆଉ ଗୋଟିଏ ବଣୁଆ ଜୀବ ହେଉଛି "ୟୃକ୍"। ଆମ ଭାଷାରେ ତାକୁ ଚମରୀ ଗାଈ କୁହାଯାଏ।

ଚମରୀ ହିମାଳୟ ପର୍ବତ ଓ ତା ଆରପଟରେ ଥିବା ତିବ୍ବତ ଦେଶରେ ବାସ କରନ୍ତି। ଶୀତ ପ୍ରଧାନ ଅଞ୍ଚଳର ଅଧିବାସୀ ସେମାନେ। ତେଣୁ ପ୍ରକୃତି ତାଙ୍କର ସର୍ବାଙ୍ଗ ଅତି ଘନ ଓ ଦୀର୍ଘ ଲୋମରେ ଘୋଡ଼ାଇ ପକାଇଛି।



( ଚମରୀ ଗାଈ )

ସେମାନଙ୍କ ଶିଙ୍ଗ ମୂଳରୁ ଅଳ୍ପ ବଙ୍କା ହୋଇ ଉପରକୁ ଉଠି ଯାଇଥାଏ। ଅଗର ଶେଷ ଅଂଶ ପୁଣି ପଛକୁ ବଙ୍କେଇ ଯାଇଥାଏ। ତାହା ଅତି ମୁନିଆଁ।

ଖଣ୍ଡିଆ ଖାବରା ପାହାଡ଼ିଆ ରାସ୍ତାରେ ଯିବା ଆସିବା କରିବାରେ ଏମାନେ ବେଶ୍ ଦକ୍ଷ। ଦେହରେ ବହୁତ ବଳ।

ସେ ଅଞ୍ଚଳର ଲୋକେ ପିଲାଦିନୁ ଧରିଆଣି ସେମାନଙ୍କୁ ପୋଷା ମନାନ୍ତି। ଚମରୀ ହେଉଛି ସେମାନଙ୍କର ମୂଲ୍ୟବାନ୍ ସମ୍ପତ୍ତି। ତା' ପିଠିରେ

ଘର ଜନ୍ତୁମାନ ଲଦି ବା ଝଙ୍କେ ବସି ସେମାନେ ପାହାଡ଼ ଉପରେ ଚଢ଼ି ସମତଳ ଅଞ୍ଚଳକୁ ଆସନ୍ତି । ତାଙ୍କ ଦେଶର ଦ୍ରବ୍ୟ ଅର୍ଥାତ୍ ଚମରୀର ବାଳ, ମୃଗନାଭି କସ୍ତୁରୀ, ଶିଳାଜତୁ ଆଦି ଏ ଦେଶରେ ବିକନ୍ତି । ତିବ୍ବତରେ ଲୁଣ ମିଳେ ନାହିଁ । ଏ ଦେଶରୁ ଲୁଣ ନେଇ ସେଠାରେ ବିକନ୍ତି ।

ପାଲା କଲାବେଳେ ଗାୟକ ଯେଉଁ ଚାମର ବା ଚଅଁର ହାତରେ ଧରିଥାଏ, ବା ଭକ୍ତ ପ୍ରାର୍ଥନା କଲାବେଳେ ଠାକୁରଙ୍କୁ ଯେଉଁ ଚାମରରେ ପବନ କରେ, ତାହା ଏହି ଚମରୀ ଲୋମରୁ ତିଆରି ହୋଇଥାଏ ।



# ହରିଣ ଜାତିର ସର୍ବ ବୃହତ୍ ଜୀବ :
# ମୁଜ୍

ମୃଗ ବା ହରିଣ ଜାତିର ଜୀବଙ୍କ ମଧ୍ୟରେ 'ମୁଜ୍' ହେଉଛି ସର୍ବ ବୃହତ । ଏ ନାମଟା ଆମେରିକା ବାସୀଙ୍କ ପ୍ରଦତ୍ତ ଏବଂ ସର୍ବତ୍ର ପ୍ରଚଳିତ । ଇଂରାଜୀ ନାମ ହେଉଛି ଏଲକ୍ । ଏମାନେ ଉଚ୍ଚତାରେ ଗୋଟିଏ ଗୋଟିଏ ହାତୀ ସହିତ ସମାନ ହେବେ ।

ଏସିଆ, ଇଉରୋପ ଓ ଆମେରିକାର ଉତ୍ତରାଞ୍ଚଳ ଜଙ୍ଗଲରେ ସାଧାରଣତଃ ଏମାନେ ବାସ କରନ୍ତି ।

ଏମାନଙ୍କ ଶରୀର ଖୁବ୍ ବଳିଷ୍ଠ । ପିଠିର ଉପରଭାଗ ପିଚ୍ଛପାଖ ଠାରୁ ଉଚ୍ଚ । କାନ୍ଧରେ ମାଂସଳ କୁଜଟାଏ ଦେହ ସହିତ ମିଶିଯାଇ ରହିଥାଏ । ଗୋଡ଼ ଗୁଡ଼ିକ ଲମ୍ବା, ତେଣୁ ପ୍ରକାଣ୍ଡ ଦେହ ବହିଥିଲେ ସୁଦ୍ଧା ଶୀଘ୍ର ଦଉଡ଼ ପାରେ । ଆଗ ଦୁଇଗୋଡ଼ ଗଛରେ ଲଗାଇ, ପଛ ଦୁଇ ଗୋଡ଼ରେ ଠିଆ ହୋଇ ଉଚ୍ଚ ଗଛର ଅଟରୁ ପତ୍ର ଛଡ଼ାଇ ସହଜରେ ଖାଇଥାଏ ।



( ମୁଜ୍ )

'ମୁଜ୍'ର ଲାଞ୍ଜ ନାହିଁ । ମୁଣ୍ଡର ଶିଙ୍ଗ ଦୁଇଟି ଅତି ବିଚିତ୍ର । ଅଣ୍ଡିରି ଜନ୍ତୁର ଗଳା ତଳେ ଚମଡ଼ାର ଗୋଟିଏ ଥଳି ଓହଳି ଥାଏ ।

ଶିଙ୍ଗ ଦୁଇଟି ମୁଣ୍ଡରୁ ବାହାରି ଦୁଇ ପାଖକୁ ବଙ୍କେଇ ଯାଇ ଉପରକୁ ଉଠିଥାଏ । ଗଛପରି ମୂଳ ଗଣ୍ଡି ଗୋଲ; ମାତ୍ର ଗଛ ଉପରେ ଶାଖା ପ୍ରଶାଖା ମେଲିଲା ଭଳି ବହୁତ ଗୁଡ଼ିଏ କେନା ବାହାରି ପରସ୍ପର ଛନ୍ଦ ହୋଇ ରହିଥାଏ । ଆଉ କୌଣସି ପ୍ରକାର ଶୃଙ୍ଗୀ ପଶୁଙ୍କର ଶୃଙ୍ଗ ଏପରି ହୋଇ ଥିବାର ଦେଖାଯାଏ ନାହିଁ । ଉପରଟା ଦେଢ଼ଫୁଟ ବା ଦୁଇଫୁଟ ଚଉଡ଼ାର ଗୋଟିଏ କୁଲା ପରି ଦେଖାଯାଏ । ତାହା ପୁଣି ଦନ୍ତୁରିତ । ପୁଣି ଏହାର ବିଶେଷତ୍ୱ ହେଉଛି, ମୁଜ ମୁଣ୍ଡ ନ ହଲାଇ ମଧ୍ୟ ଶିଙ୍ଗକୁ ତଳ ଉପର ଏ ପାଖ ସେ ପାଖ ମନକୁ ମନ ହଲାଇ ପାରେ । ଦରକାର ପଡ଼ିଲେ ଶିଙ୍ଗ ଦୁଇଟା ପଛକୁ ନୁଆଇଁ ପିଠି ଉପରେ ଶୁଆଇ ରଖେ । ତାର ଜୀବନ ରକ୍ଷା ପାଇଁ ପ୍ରକୃତି ବୋଧହୁଏ ଏହି ସୁବିଧା ତାକୁ ଦେଇଛି ।

ବିପଦର ଆଶଙ୍କା ଦେଖିଲେ ମୁଜ ଜଙ୍ଗଲ ଭିତରେ ଅତି ଦ୍ରୁତ ଗତିରେ ଧାଏଁ । ଶିଙ୍ଗ ଦୁଇଟା ଟେକା ହୋଇ ରହିଥିଲେ, ଗଛ ଡାଳ, ଲତା ପ୍ରଭୃତିରେ ଛନ୍ଦ ହୋଇ ତା ଗତିରେ ବାଧା ସୃଷ୍ଟି କରନ୍ତା । ଶିଙ୍ଗ ପିଠି ଉପରେ ଲଗାଇ ରଖିଦେଲେ ଗଛଲତା ଆଉ ବିଘ୍ନ ଘଟାଇ ପାରନ୍ତି ନାହିଁ । ଶୋଇବା ସମୟରେ ମଧ୍ୟ ସେ ଶିଙ୍ଗ ଦୁଇଟିକୁ ଆଗ ଶୁଆଇ ଦିଏ ।

ମାଈ ମୁଜ୍‌ର ଏପରି ଶିଙ୍ଗ ନ ଥାଏ କି ଗଳାରେ ଥଳି ନ ଥାଏ ।

ମା' 'ମୁଜ୍' ଥରକେ ଗୋଟିଏ ପିଲା ଜନ୍ମ କରେ ।

ମୁଜ୍‌ର ବେକ ଓ ଗଳା ଅତି ବେଶୀ ମୋଟା ହୋଇଥିବାରୁ ସେ ତଳକୁ ମୁହଁ କରି ଭୂଇଁ ଉପରୁ ଘାସ ଚରିପାରେ ନାହିଁ । ଗଛ ଉପରର ଡାଳ ପତ୍ର ହିଁ ତାର ପ୍ରଧାନ ଖାଦ୍ୟ । ପାଣି ପିଇବା ଦରକାର ପଡ଼ିଲେ ପାଣି ଭିତରେ ସମସ୍ତ ଦେହ ବୁଡ଼ାଇ ପାଣି ପିଇଥାଏ ।

‘ମୂଜ୍’ ଥିବା ଅଞ୍ଚଳର ଲୋକେ ଆଗେ ମୂଜ୍‌କୁ ଛୁଆବେଳୁ ଧରି-ଆଣି ଘରେ ପୋଷୁଥିଲେ । ସେମାନଙ୍କ ପିଠିରେ ବସି ବା ଜିନିଷପତ୍ର ଲଦି ଗୋଟିଏ ସ୍ଥାନରୁ ଦୂର ସ୍ଥାନକୁ ଯିବା ଆସିବା କରୁଥିଲେ । ମାତ୍ର ସେମାନଙ୍କ ସଂଖ୍ୟା କମି ଆସିବାରୁ ସେ ସବୁ ଅଞ୍ଚଳର ସରକାର ଘରେ ମୂଜ୍ ପୋଷିବା ବାରଣ କରି ଦେଇଛନ୍ତି । ଶିକାର କରିବା ତ କଡ଼ାକଡ଼ ଭାବରେ ବନ୍ଦ୍ କରାଯାଇଛି ।



# ଓ୍ୟାପିଟି

'ଏଲ୍କା' ବା 'ମୁଜ୍' ଜାତୀୟ ହରିଣରେ ଆଉ ଗୋଟିଏ ଗୋଷ୍ଠୀ ହେଉଛି 'ଓ୍ୟାପିଟି' । ହରିଣ ଜାତିର ପଶୁମାନଙ୍କ ମଧ୍ୟରେ ଏହା ବଡ଼— ମାତ୍ର 'ମୁଜ୍' ଅପେକ୍ଷା ସାନ । ଦେହର ଓଜନ ଏକ ହଜାର ପାଉଣ୍ଡ ପର୍ଯ୍ୟନ୍ତ ହୁଏ ।

ଏମାନଙ୍କ ଉଚ୍ଚତା ପାଦ ଖୁରା ଠାରୁ ପିଠି ପର୍ଯ୍ୟନ୍ତ ପ୍ରାୟ ଛ' ଫୁଟ । ମୁଜ୍‌ଙ୍କ ପରି କଳା ଓ ମୋଟା । ଲାଞ୍ଜ ଅତି ସାନ । ଏମାନେ ଆମେରିକା ବିଶେଷତଃ କାଲିଫର୍ଣ୍ଣିଆର ଜଙ୍ଗଲ ଭିତରେ ବହୁ ସଂଖ୍ୟାରେ ଦେଖା ଯାଆନ୍ତି ।

ଓ୍ୟାପିଟି ଅନ୍ୟାନ୍ୟ ମୃଗଜାତୀୟ ପଶୁଙ୍କ ଭଳି ତୃଣଭୋଜୀ, ମାତ୍ର ବିଶେଷ କ୍ରୋଧୀ ଓ ଅସହିଷ୍ଣୁ । ଦୁଇଟି ପୁଂ ଓ୍ୟାପିଟିଙ୍କ ସାକ୍ଷାତ ହୋଇ ଗଲେ ସେମାନଙ୍କ ଭିତରେ ଲାଗିଯାଏ ଲଢ଼େଇ । ସେମାନଙ୍କ ମଧ୍ୟରୁ ଗୋଟିଏ ମରି ନ ଗଲେ ବା କ୍ଷତବିକ୍ଷତ ହୋଇ ପଳାଇ ନ ଯିବାଯାଏ, ସେ ଯୁଦ୍ଧ ବନ୍ଦ ହୁଏ ନାହିଁ । ଦୁଇ ଯୋଦ୍ଧାଙ୍କୁ ଭୋକଶୋଷ ବାଧା ଦିଏ ନାହିଁ କି ରାତି ଦିନ ଜଣାଯାଏ ନାହିଁ । ବନରେ ଯେଉଁ ଅଞ୍ଚଳରେ ଦୈବାତ୍ ଏ ଯୁଦ୍ଧ ଲାଗେ, ସେ ଅଞ୍ଚଳର କଣ୍ଟା, ଝଟା, ବୁଦା, ଗଛର ସାନ ବଡ଼ ଡାଳ, ପତ୍ର, ଫୁଲ କିଛି ରହେ ନାହିଁ । ଅତି ବଡ଼ ବଡ଼ ଗଛ ଖୋଲପା ଶୂନ୍ୟ ହୋଇଯାଏ ।

ଏହାର ଶିଙ୍ଗ ଦେହର ଦୈର୍ଘ୍ୟ ଅନୁପାତରେ ଅତି ବଡ଼ । ମୁଣ୍ଡ ଟେକିଲେ ପିଠିର ଦୁଇ ତୃତୀୟାଂଶ ପର୍ଯ୍ୟନ୍ତ ଲମ୍ବିଯାଏ । ଏହା ପୁଣି ବହୁ ଶାଖା ପ୍ରଶାଖା ଯୁକ୍ତ । ଆଖି ଯୋଡ଼ିକ ଅପେକ୍ଷାକୃତ ଶ୍ରେଷ୍ଠ । ନାକ ରନ୍ଧ୍ର ମୋଟା । ତେଣୁ ଦୃଷ୍ଟି ଶକ୍ତି କ୍ଷୀଣ ହେଲେ ମଧ୍ୟ ଘ୍ରାଣଶକ୍ତି ଅତି ବେଶୀ । ଶତ୍ରୁ ହାତରୁ ରକ୍ଷା କରିବାରେ ସେହି ଘ୍ରାଣଶକ୍ତି ହିଁ ତାକୁ ବିଶେଷ ସାହାଯ୍ୟ କରେ ।

ମା’ ଓ୍ୟାପିଟି ଥରକେ ଗୋଟିଏ ମାତ୍ର ପିଲା ଜନ୍ମ କରେ। ମାଟିରେ ପଡ଼ିବାର ଘଣ୍ଟାକ ମଧ୍ୟରେ ଛୁଆ ଠିଆ ହୁଏ, ଡଆଁଡେଇଁ କରେ । ଖୁବ୍ ବେଶୀ ହେଲେ ମା’ ଛଅମାସ ଯାଏ ତା’ର ଯତ୍ନ ନେଇ-ଥାଏ ଏବଂ ପାଖେ ପାଖେ ରଖିଥାଏ । ତା’ପରେ ଛୁଆ ସ୍ୱାଧୀନ ଭାବରେ ନିଜକୁ ଚଳାଏ ।

ଏମାନେ ଦଳ ଦଳ ହୋଇ ବାସ କରନ୍ତି । ଦଳରେ ସାଧାରଣତଃ ପନ୍ଦରରୁ ପଚିଶ ଯାଏ ମାଈ ଓ ଗୋଟିଏ ମାତ୍ର ସର୍ଦ୍ଦାର ବା ପୁରୁଷ ରହିଥାଏ । ଦଳକୁ ରକ୍ଷଣାବେକ୍ଷଣ କରିବା ଦାୟିତ୍ୱ ସର୍ଦ୍ଦାରର । ଯେତେ ଅସୁବିଧା ପଡ଼ିଲେ ମଧ୍ୟ ଦଳର କେହି ସର୍ଦ୍ଦାରର ବିରୋଧ କରିବାକୁ ସାହସ କରେ ନାହିଁ । କେବଳ ଯୁଦ୍ଧ ସମୟରେ ଅସନ୍ତୁଷ୍ଟମାନେ ଦଳ ଛାଡ଼ି ପଳାଇ ଯାଆନ୍ତି । ଅନ୍ୟ ଦଳରେ ଯୋଗ ଦିଅନ୍ତି ବା ବହୁଦୂର ଜଙ୍ଗଲକୁ ଯାଇ ଆତ୍ମ ଗୋପନ କରନ୍ତି ।

ଋତୁର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଏମାନେ ବାସସ୍ଥାନ ବଦଳାଉ ଥା’ନ୍ତି । ବର୍ଷା ଓ ଶୀତ ସମୟରେ ସମତଳ ଅଞ୍ଚଳର ଜଙ୍ଗଲରେ ରହି ଘାସ, ବୁଦା, ପତ୍ର ଆଦି ଖାଆନ୍ତି । ଗ୍ରୀଷ୍ମଦିନ ଆସିଗଲେ ଉଚ୍ଚ ପାହାଡ଼ ଉପରକୁ ଯାଇ ରହନ୍ତି ।

ବଣରେ ରହୁଥିବା ଭାଲୁ, ଗଧିଆ ଓ ପୁମା ଜାତିୟ ବାଘ ସେମାନଙ୍କର ବଡ଼ ଶତ୍ରୁ । ଅନ୍ୟ କାହାରିକୁ ସେମାନଙ୍କର ଭୟ ନ ଥାଏ ।

‘ମୁଜ୍’ ଭଳି ଏମାନେ ମୁଣ୍ଡ ନ ହଲାଇ ମଧ୍ୟ ଶିଙ୍ଗ ହଲାଇଥାନ୍ତି । ଦରକାର ମୁତାବକ ଶିଙ୍ଗ ପିଠି ଉପରେ ବସାଇ ଯାଏ କିମ୍ବା ଯୁଦ୍ଧ ସମୟରେ ସିଧା ଠିଆ ହୋଇ ରହେ ।

ସ୍ଥାନୀୟ ଲୋକମାନେ ଏମାନଙ୍କ ଶିଙ୍ଗ, ଦାନ୍ତ ଓ ଚମଡ଼ା ପାଇଁ ବହୁ ପରିମାଣରେ ଆଗେ ଶିକାର କରୁଥିଲେ । ଏବେ ସରକାର କଡ଼ାକଡ଼ି ଆଇନ କରି ଓ୍ୟାପିଟି ଶିକାର ବନ୍ଦ କରି ଦେଇଛନ୍ତି ।

‘ମୁଜ୍’ ଜାତିୟ ହରିଣରେ ଆଉ ଗୋଟିଏ ଗୋଷ୍ଠୀ ହେଉଛି ‘ଫଲୋ’ ହରିଣ । ଏମାନଙ୍କ ଦେହ ସାନ । ‘ମୁଜ୍’ର ଶିଙ୍ଗ ସହିତ ଏମାନଙ୍କ ଶିଙ୍ଗର ବହୁତ ସାମଞ୍ଜସ୍ୟ ଅଛି ।



( ୱାପିଟି )

ଫଲୋ ହରିଣ ଇଉରୋପର ବିଭିନ୍ନ ଦେଶରେ, ବିଶେଷତଃ ଜାଷ୍ଟୁ ପାର୍କ, ଚିଡ଼ିଆଖାନା ପ୍ରଭୃତିରେ ପୋଷା ଯାଇଛନ୍ତି ।

ଏମାନଙ୍କ ଉଚ୍ଚତା ଗୁଣ ଫୁଟ ମଧ୍ୟରେ । ଶିଙ୍ଗ ଅଢ଼େଇ ଫୁଟରୁ ଅଧିକ । ମୁଣ୍ଡ ଉପରୁ ସରୁ ହୋଇ ବାହାରି ଉପରକୁ ଚଉଡ଼ା ଓ ମୋଟା ହୋଇଯାଏ । ମନୁଷ୍ୟ ହାତର ପାପୁଲିରୁ ଆଙ୍ଗୁଠି ପ୍ରାୟ ଶିଙ୍ଗର ଶେଷ ମୁଣ୍ଡ ଦେଖାଯାଏ ।

ଫଲୋ ହରିଣ ଅତି ଦ୍ରୁତ ଗତିରେ ଧାଏଁ । ସାତ ଆଠ ଫୁଟ ଉଚ୍ଚତା ବିଶିଷ୍ଟ ବୁଦା, ବାଡ଼, ପାଚେରି ଅକ୍ଲେଶରେ ସେ କୁଦାମାରି ଚାଲିଯାଏ ।

ଏମାନେ ବଡ଼ ଶାନ୍ତ ଓ ଭଦ୍ର । ବିପଦର ଆଶଙ୍କା ଦେଖିଲେ ଏତେ ଶୀଘ୍ର ଦଉଡ଼େ ଯେ, ଶିକାରୀ ତାର ପତ୍ତା ପାଏ ନାହିଁ ।



# ଚିରୁ

ଚିରୁ ଜେମ୍‌ସ ବାକ୍ ହରିଣ ଗୋଷ୍ଠୀର ଆଉ ଗୋଟିଏ ଜୀବ । ତାର ଶିଙ୍ଗ ଠିକ୍ ଉପରକୁ ଠିଆ ହୋଇଥାଏ; ମାତ୍ର ଚିରୁର ଶିଙ୍ଗ ସେପରି ସିଧା ସଳଖ ନୁହେଁ; ଆଗକୁ ଅଳ୍ପ ବଙ୍କେଇ ରହିଥାଏ ।

ଚିରୁ ଶୀତ ପ୍ରଧାନ ଅଞ୍ଚଳର ଅଧିବାସୀ । ତେଣୁ ପ୍ରକୃତି ଏମାନଙ୍କର ଦେହର ଚମକୁ ଅତି ମୋଟା କରି ଦେଇଛି । ଚମ ଉପରେ ଲେସି ହୋଇ ରହିଛି ସରୁ ସରୁ ବହଳ ଲୋମ ।

ଏମାନଙ୍କ ବାସସ୍ଥାନ ହିମାଳୟର ବାର ହଜାର ଫୁଟରୁ ଅଠର ହଜାର ଫୁଟ ଉଚ୍ଚରେ । ଦେହର ଓଜନ ଶହେ କୋଡ଼ିଏ ପାଉଣ୍ଡ ପର୍ଯ୍ୟନ୍ତ ।



( ଅଣ୍ଡିବ ଚିରୁ )

ଚିରୁର ଉଚ୍ଚତା ପାଦଠାରୁ ପିଠି ପର୍ଯ୍ୟନ୍ତ ପ୍ରାୟ ସାଢ଼େ ଚାରି ଫୁଟ । ଗୋଡ଼ଗୁଡ଼ିକ ଅଢ଼େଇ ଫୁଟ ଉଚ୍ଚ । ଦେହ ତୁଳନାରେ ବେକ ଅସମ୍ଭବ ରକମର ଲମ୍ବା ।

ସବୁ ହରିଣ ପରି ଏ ଅତି କ୍ଷୀପ୍ର ଗତିରେ ଦଉଡ଼ ପାରେ । ପାହାଡ଼ର ଗୋଟାଏ ମୁଣ୍ଡିଆରୁ ଆଖି ପିଛୁଳାକେ କୁଦ ପଡ଼େ ।

ଚରୁ ଶିଙ୍ଗ ଦୁଇଟିର ବିଶେଷତ୍ୱ ହେଉଛି, ମୂଳରୁ ଅଗ ପର୍ଯ୍ୟନ୍ତ କେତେ ଗୁଡ଼ଏ ମୁଦଆର ସମଷ୍ଟି ପରି ଦେଖାଯାଏ । ବର୍ଣ୍ଣ ଗାଢ଼ କଳା । ମୁହଁ ଓ ଦେହର ବର୍ଣ୍ଣ ବହଳ କଳା ମିଶା ରଙ୍ଗ । ମାଈ ଚରୁ ମୁଣ୍ଡରେ ଶିଙ୍ଗ ଉଠେ ନାହିଁ ।

ଭୂଇଁ ତଳର ଘାସ ଓ କେତେକ ନିର୍ଦ୍ଦିଷ୍ଟ ଗଛର କଅଁଳ ଡାଳପତ୍ର ଏମାନଙ୍କର ପ୍ରଧାନ ଖାଦ୍ୟ । ବାସସ୍ଥାନ ହେଉଛି ଅତି ଉଚ୍ଚରେ ବଢ଼ିଥିବା ଘାସଗହଳ ।

ମାଈ ଚରୁ ଦଳ ବାନ୍ଧି ବୁଲୁଥିବାର ଦେଖାଯାଏ । ଛୁଆଗୁଡ଼ିକ ମଧ୍ୟ ସେମାନଙ୍କ ସାଙ୍ଗରେ ଥାଆନ୍ତି । କିନ୍ତୁ ଅଣ୍ଡିରା ଚରୁ ଏକାକୀ ରହିବାକୁ ଭଲପାଏ ।



# ଟେକିନ୍

ହିମାଳୟର ବହୁ ଉଚ୍ଚରେ ପ୍ରବଳ ଶୀତ ଓ ବରଫ ଭିତରେ ଗୋଟିଏ ଅଦଭୂତ ପଶୁ ବାସ କରେ—ତା' ନାମ ହେଉଛି "ଟେକିନ୍" ।

ଟେକିନ୍ ହରିଣ ଜାତୀୟ ଜୀବ ହେଲେ ମଧ୍ୟ ହରିଣଙ୍କ ପରି ଏହାର ଗୋଡ଼ ଲମ୍ବା ନୁହେଁ । କ୍ଷିପ୍ର ଗତିରେ ମଧ୍ୟ ସେ ଦଉଡ଼ି ପାରେ ନାହିଁ । ପ୍ରାଣୀ ତତ୍ତ୍ୱବିତ୍ ବୈଜ୍ଞାନିକମାନେ କହନ୍ତି, ଟେକିନ୍ ହରିଣ ଓ ଛେଳି ଜାତିର ପ୍ରାଣୀମାନଙ୍କ ମଝାମଝି । ଏସିଆ ମହାଦେଶର ପଶୁମାନଙ୍କ ଭିତରେ ତାକୁ 'ଯୋକର' ବା ଦୁଆଶ୍ୱା ବୋଲି କୁହାଯାଏ ।

ସମୁଦ୍ର ପତ୍ତନ ଠାରୁ ପ୍ରାୟ ଅଠର ହଜାର ଫୁଟ ଉଚ୍ଚରେ ଭୁଟାନ ସୀମା ନିକଟରେ ଏମାନଙ୍କୁ ଦେଖାଯାଏ । ବୋଧହୁଏ ଏମାନଙ୍କ ସଂଖ୍ୟା ବହୁତ କମି ଗଲାଣି; ପୁଣି ନିର୍ଜନ ସ୍ଥାନର ବାସିନ୍ଦା । ତେଣୁ ଲୋକେ କ୍ୱଚିତ ଏମାନଙ୍କ ଦେଖା ପାଆନ୍ତି ।

ଏହାର ମୁହଁର ଥୋମଣି ନାକ ଉପରେ ଫୁଲିଥାଏ । ବେକରେ ବଡ଼ ବଡ଼ ଲୋମ ଓହଳି ଥାଏ । ଶିଙ୍ଗ ଦୁଇଟି ଅଦ୍‌ଭୁତ ଧରଣର । ଆମେ ଅକ୍ଷର ତଳେ ଲେଖୁଥିବା ଲ ଫଳାକୁ ଓଲଟାଇ ଦେଲେ ଯେଉଁ ଆକାର ଧରିବ, ଟେକିନ୍‌ର ଶିଙ୍ଗ ଠିକ୍ ସେହିପରି ।

ଦେହ ମୋଟା ଓ ଖର୍ବ । ଉଚ୍ଚତା ତିନିଫୁଟ ମଧ୍ୟରେ । ଚମ ଉପରେ ବହଳ ଲୋମ ।

ଏମାନେ ବନଯାକ ଏମାନଙ୍କ ନିରାପଦ ବାସସ୍ଥାନ ଘନ ବାଉଁଶ ଜଙ୍ଗଲ ଭିତରେ ଶୋଇ ରହନ୍ତି । ସନ୍ଧ୍ୟା ପରେ ଘରୁ ବାହାରି ରାତିଯାକ ଖାଦ୍ୟ ଖୋଜନ୍ତି । ଘାସ, କଣାବୁଦା, ଗଛର କଅଁଳ ପତ୍ର, ବିଶେଷତଃ ବାଉଁଶ କରଡ଼ (ଛୋଟ ଛୋଟ ବାଉଁଶ ଗଛର ଗଜା) ଆଦି ଏମାନଙ୍କର ପ୍ରିୟ ଖାଦ୍ୟ ।



( ଟେକିନ )

ଏମାନଙ୍କ ଦଳ ବଡ଼ ନୁହେଁ । ସାଧାରଣତଃ ଦୁଇଟିରୁ ଛଅଟି ପର୍ଯ୍ୟନ୍ତ ଦଳବାନ୍ଧି ବୁଲାବୁଲି କରନ୍ତି । ଦଳର ସର୍ଦ୍ଦାର ଆଗେ ଆଗେ ଥାଏ । ବିପଦର ଆଶଙ୍କା କଲେ ଘୋଡ଼ାର ହ୍ରେଷା ରବ ପରି ସେ ଏପରି ଶବ୍ଦ କରେ ଯେ, ଅନ୍ୟମାନେ ଆତ୍ମଗୋପନ କରି ନିଅନ୍ତି ।

ଯଦି ଦଳ ଭିତରୁ ଗୋଟିଏ କେହି ଦୈବ କ୍ରମେ ଆଘାତ ପାଏ, ତେବେ ଅନ୍ୟମାନେ ଘେରିଯାଇ ଶିକାରୀ ଉପରେ ଚଡ଼ାଉ କରନ୍ତି । ହୁଏତ ଶିକାରୀକୁ ମାରନ୍ତି, ନ ହେଲେ ଶିକାରୀ ହାତରେ ସମସ୍ତେ ମରନ୍ତି । କିନ୍ତୁ ଦଳ ଭିତରୁ ଗୋଟିକୁ ବିପଦରେ ପକାଇ ପଳାଇ ଯାଆନ୍ତି ନାହିଁ । ଏପରିକି ଶ୍ରେଷ୍ଠ ଛୁଆ ମଧ୍ୟ ନିର୍ଭୟରେ ଲଢ଼ିଥାଏ । ଦଳର କୌଣସି କ୍ଷତି ହେଲେ ସେଥିପାଇଁ ନିଜ ଜୀବନ ଦେବାକୁ ସେ ଭୟ କରେ ନାହିଁ ।

ଏହି ନିରୀହ ଓ ଶାନ୍ତ ଶିଷ୍ଟ ଜୀବଟି ସବୁ ସମୟରେ ନିର୍ଜନରେ ଏକୁଟିଆ ରହିବାକୁ ଭଲ ପାଏ ।

ସାଧାରଣତଃ ବର୍ଷର ମାର୍ଚ୍ଚ ବା ଅପ୍ରେଲ ମାସରେ ମା' ଗୋଟିଏ ପିଲା ଜନ୍ମ କରିଥାଏ । ଜନ୍ମ ହେବାର ତିନିଦିନ ପରେ ପିଲା

ନିଜକୁ ସ୍ୱାଧୀନ ମନେ କରେ । ବଣ ଜଙ୍ଗଲରେ ବୁଲି ନିଜ ଖାଦ୍ୟ ଯୋଗାଡ଼ରେ ଲାଗିଯାଏ । ଅବଶ୍ୟ ମାସେ ହେବା ପର୍ଯ୍ୟନ୍ତ ମା' କ୍ଷୀର ଖାଉଥାଏ ।

ସ୍ଥାନୀୟ ଆଦିମ ଅଧିବାସୀମାନେ ବିଷାକ୍ତ ଶର ମାରି ଏମାନଙ୍କୁ ହତ୍ୟା କରୁଥିଲେ । ଦେହରେ ଥିବା ପ୍ରଚୁର ମାଂସ ସେମାନଙ୍କୁ ଆକୃଷ୍ଟ କରୁଥିଲା । ସେ ଅଞ୍ଚଳରେ କୌଣସି ପ୍ରକାରର ଆଇନ କଟକଣା ଜାରି କରାଯାଇ ନ ଥିଲେ ମଧ୍ୟ ଆଜିକାଲି ଟେକନ ଶିକାର ପ୍ରାୟ ବନ୍ଦ ହୋଇ ଗଲାଣି । କାରଣ, ଟେକନଙ୍କ ସଂଖ୍ୟା ତ କମିଗଲାଣି, ତା' ଅପେକ୍ଷା ଦ୍ରୁତଗତିରେ ଶିକାରୀ ଅଧିବାସୀଙ୍କ ସଂଖ୍ୟା ସେ ଅଞ୍ଚଳରୁ ଲୋପ ପାଇ ଯାଉଛି । କେହି କେହି କହନ୍ତି, ଟେକନଙ୍କ ମାଂସ ସେପରି କିଛି ସୁସ୍ୱାଦୁ ବା ଲୋଭନୀୟ ନୁହେଁ । ସେମାନଙ୍କ ଚମଡ଼ା ମଧ୍ୟ ବିଶେଷ କିଛି କାମରେ ଲାଗେ ନାହିଁ । ସେହି କାରଣରୁ ଆଜିକାଲି ଟେକନ ଶିକାର ପ୍ରାୟ ନାହିଁ କହିଲେ ଚଳେ ।



# ଆଇବେକ୍‌ସ

ଆଇବେକ୍‌ସ ଆଫ୍ରିକା, ଏସିଆ ଓ ଇଉରୋପର ଉତ୍ତରାଞ୍ଚଳର ସର୍ବ ଶେଷ ଅଂଶରେ ଦେଖା ଯାଆନ୍ତି । ଏମାନେ ଛାଗ ଜାତୀୟ ଜୀବ ହେଲେ ମଧ୍ୟ ହରିଣ ପରି ଅତି ଶୀଘ୍ର ଦଉଡ଼ ପାରନ୍ତି ଏବଂ ଅତି ଉଚ୍ଚ ଜାଗାରୁ କୁଦା ମାରି ପାରନ୍ତି । ଦରକାର ପଡ଼ିଲେ ପାହାଡ଼ ପର୍ବତର ମୁଣ୍ଡିଆ ଉପରୁ ପ୍ରାୟ ଶହେ ଫୁଟ ପର୍ଯ୍ୟନ୍ତ ତଳକୁ ଲମ୍ଫ ଦେଇଥାନ୍ତି । ଗୋଟିଏ ମୁଣ୍ଡିଆରୁ ଅନ୍ୟ ମୁଣ୍ଡିଆକୁ କୋଡ଼ିଏ ଫୁଟ ଚଉଡ଼ାର ଖାଲ କୁଦି ପଡ଼ନ୍ତି ।



( ଆଇବେକ୍‌ସ )

ଏମାନଙ୍କର ଖୁରା ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଉଚ୍ଚତା ତିନି ଫୁଟ । ବେକ ଠାରୁ ଲାଞ୍ଜ ଯାଏ ଚାରିଫୁଟ ଲମ୍ବ । ମୁଣ୍ଡର ଶିଙ୍ଗ ଦୁଇଟି ଅଧିକ ଆକର୍ଷଣୀୟ । ତାହା ପାଞ୍ଚଫୁଟ ପର୍ଯ୍ୟନ୍ତ ବଡ଼େ । ଅଗ ଅର୍ଦ୍ଧ ଗୋଲାକାର

ହୋଇ ପଛ ଆଡ଼କୁ ବଙ୍କେଇ ଯାଇଥାଏ । ଆଗ ପାଖଟା କରତ ଦାନ୍ତ ପରି ଦେଖାଯାଏ । ଏହାର ସର୍ବାଙ୍ଗ ଈଷତ୍ ହଳଦିଆ ରଙ୍ଗର ବହଳ ଲୋମରେ ଆବୃତ ।

ଆଇବେକ୍ସର ସ୍ୱଭାବ ଅତି ଚଞ୍ଚଳ । ଏମାନଙ୍କ ଦୃଷ୍ଟିଶକ୍ତି ଯେପରି ତୀକ୍ଷ୍ଣ, ଶ୍ରବଣଶକ୍ତି ଓ ଘ୍ରାଣଶକ୍ତି ମଧ୍ୟ ସେହିପରି ଅତି ବେଶୀ । ତେଣୁ କୌଣସି ଶତ୍ରୁ କେଉଁ ଦିଗରୁ ଆସୁଛି, କେତେ ଦୂରରେ ଅଛି ଏବଂ ସେ ଶତ୍ରୁ କେଉଁ ଧରଣର, ସେମାନେ ତାହା ବହୁ ଆଗରୁ ବୁଝି ପାରନ୍ତି । ତେଣୁ ନିଜକୁ ରକ୍ଷା କରିବା ପାଇଁ ବହୁ ଆଗରୁ ସାବଧାନ ହୋଇ ଯାଆନ୍ତି । ଶତ୍ରୁ କବଳରୁ ଖସି ଯିବାର ସୁବିଧା ନ ପାଇଲେ ଦଳବାନ୍ଧି ଏପରି ଆକ୍ରମଣ କରନ୍ତି ଯେ, ଶେଷରେ ଶିକାରୀ ହିଁ ଶିକାର ହୋଇଥାଏ । ଆଇବେକ୍ସ ମାଂସ ଖାଇବା ଲୋଭ ସବୁଦିନ ପାଇଁ ଦୂର ହୋଇଯାଏ ।

ପୁରୁଷ ଆଇବେକ୍ସର ଓଠ ତଳେ ଦାଢ଼ି ହୁଏ; ମାତ୍ର ମାଈର ଦାଢ଼ି ହୁଏ ନାହିଁ । ଶିଙ୍ଗ ଅପେକ୍ଷାକୃତ ଛୋଟ ଛୋଟ ହୁଏ ।

ଏମାନଙ୍କ ଦଳସବୁ ସାନ । ଗୋଟିଏ ସର୍ଦ୍ଦାରର ଅଧୀନରେ ଚାରି ପାଞ୍ଚୋଟି କେବଳ ମାଈ ଓ ପିଲା ରହିଥାନ୍ତି ।

ବଣ ଜଙ୍ଗଲ ଓ ପାହାଡ଼ିଆ ଅଞ୍ଚଳର ଡାହାଳ କୁକୁର ଏମାନଙ୍କର ପ୍ରଧାନ ଶତ୍ରୁ । ସେମାନଙ୍କ ଦଳ ତ ସାନ ନୁହେଁ—ଗୋଟିଏ ଦଳରେ ପଚିଶ ତିରିଶିରୁ କମ୍ ନ ଥାନ୍ତି । ଆଇବେକ୍ସ ସେମାନଙ୍କ ଗନ୍ଧ ବାରି ପାରିଲେ ଆଗରୁ ବହୁତ ଦୂରକୁ ଦୁର୍ଗମ ଅଞ୍ଚଳକୁ ପଳାଇ ଯାଏ । ତେଣୁ କୁକୁର ଦଳ ସେମାନଙ୍କର କିଛି କ୍ଷତି କରି ପାରନ୍ତି ନାହିଁ ।

ଶୀତ ସମୟରେ ଏମାନେ ବରଫ ଢଙ୍କା ଅଞ୍ଚଳରେ ବାସ କରନ୍ତି । ବସନ୍ତ ଋତୁ ଆସିଗଲେ ବରଫ ତରଳେ । ସେତେବେଳେ ଏମାନେ ଆହୁରି ଉପରକୁ ନିରାପଦ ସ୍ଥାନକୁ ଚାଲି ଯାଆନ୍ତି ।



# ଆମେରିକାର 'ବଗହର୍ଣ୍ଣ' ମେଣ୍ଢା

ଆମେରିକା ଓ ଆଫ୍ରିକାର ପାହାଡ଼ ପର୍ବତର ବଣଜଙ୍ଗଲରେ ଗୋଟିଏ ପ୍ରକାରର ମେଣ୍ଢା ବାସ କରନ୍ତି, ଯେଉଁମାନଙ୍କ ଶିଙ୍ଗ ଅତି ଅଦ୍ଭୁତ ଧରଣର । ଏମାନଙ୍କୁ ଆଫ୍ରିକାର ଅଧିବାସୀ 'ବାର୍‌ବରି' ବୋଲି ଡାକନ୍ତି । ମାତ୍ର ଆମେରିକାରେ ଏମାନଙ୍କ ନାମ 'ବଗହର୍ଣ୍ଣ' ।

ଏହି ବାର୍‌ବରି ମେଣ୍ଢାଙ୍କ ଉଚ୍ଚତା ତିନି ଫୁଟରୁ ସାଢ଼େ ତିନି ଫୁଟ ହୁଏ । ଗୋଡ଼ ଗୁଡ଼ିକ ବେଶି ଲମ୍ବା । ମୁଣ୍ଡର ଶିଙ୍ଗ ଦୁଇଟି ସବୁ ଶୃଙ୍ଗୀ ପଶୁଙ୍କ ଠାରୁ ଭିନ୍ନ ରକମର । ଅତି ମୋଟା । ଆଗକୁ ଟିକିଏ ସରୁ ହୋଇ ଆସିଥାଏ; ମାତ୍ର ଶେଷ ମୁନଆଁ ଶିଙ୍ଗ ଦୁଇଟା



( ବଗ୍ ହର୍ଣ୍ଣ ମେଣ୍ଢା )

ମୋଡ଼ ହୋଇ କାନ ତଳ ଦେଇ ଦୁଇ ପାଖରେ ଦୁଇ ଆଖି ପାଖକୁ ଲାଗି ଯାଇଥାଏ । ଦେହର ଓଜନ ସାଧାରଣତଃ ଦୁଇଶହ ପାଉଣ୍ଡରୁ ସାଢ଼େ ତିନିଶହ ପାଉଣ୍ଡ ପର୍ଯ୍ୟନ୍ତ । କାନ ଦୁଇଟା ଅତି ସାନ ।

ଦେହସାକ ଲେସି ହୋଇ ରହୁଥିବା ବହଳ ସରୁଲୋମ ଏମାନଙ୍କୁ ଶୀତ କଷ୍ଟରୁ ରକ୍ଷା କରେ । ଶୀତଦିନେ ସେହି ଲୋମର ବର୍ଣ୍ଣ ଗାଢ଼ ମାଟିଆ; ମାତ୍ର ଖରାଦିନ ଆସିଗଲେ ସେ ରଙ୍ଗ ବଦଳି ହାଲୁକା ଧୂସର ଦେଖାଯାଏ ।

ଏହା ମେଣ୍ଢା ଜାତୀୟ ଜୀବ ହେଲେ ମଧ୍ୟ ହରିଣ ପରି ଖୁବ୍ ଶୀଘ୍ର ଧାଇଁ ଯାଇପାରେ ଓ ବହୁଦୂର କୁଦିପାରେ ।

ଏମାନେ ଯେପରି ବଳବାନ୍, ସେହିପରି ଖୁବ୍ ସାହସୀ । ଏମାନଙ୍କୁ ଶିକାର କରିବାକୁ ଆସୁଥିବା ଗଧିଆ. ବଣଆ କୁକୁର, ଭାଲୁ ଏପରିକି ବଳବାନ୍ ବାଘକୁ ମୁଣ୍ଡିଆ ମାରି ଅକର୍ମଣ୍ୟ କରି ଦିଅନ୍ତି ।

ଦୁଇଟି ବଡ଼ ହର୍ଣ୍ଣ ଏକାଠି ଦେଖାହେଲେ ସଙ୍ଗେ ସଙ୍ଗେ ସେମାନଙ୍କ ମଧ୍ୟରେ ମାଲକୁସ୍ତି ଲାଗିଯାଏ । ମୁଣ୍ଡକୁ ମୁଣ୍ଡ ବାଡ଼େଇ ଗୋଟିକୁ ଅନ୍ୟଟି ଆଘାତ କରେ ।

ଲଢ଼େଇ ଆରମ୍ଭ ହୋଇଗଲେ ପ୍ରତ୍ୟେକ ପ୍ରତିଦ୍ୱନ୍ଦ୍ୱୀ ପ୍ରାୟ ଶହେଫୁଟ ପଛକୁ ଚାଲି ଯାଆନ୍ତି । ସେଠାରୁ ମୁହଁ ତଳକୁ ପୋତି ଉଚ୍ଚ ନିଃଶ୍ୱାସ ଛାଡ଼ି ଧାଇଁ ଆସି ମୁଣ୍ଡକୁ ମୁଣ୍ଡ ପିଟି ଦ୍ୱିତୀୟ ଥର ପ୍ରସ୍ତୁତ ହେବା ପାଇଁ ପୁଣି ପଛକୁ ଘୁଞ୍ଚି ଯାଆନ୍ତି । ଦୁଇଟି ଯାକ ମୁଣ୍ଡ ଏତେ ଟାଣ ଏବଂ ଏତେ ଜୋରରେ ଧକ୍କା ଲଗେ ଯେ, ଦୁଇ ମୁଣ୍ଡ ମଝିରେ ଗୋଟାଏ ଅତି ଟାଣ ପଥର ମୁଣ୍ଡା ପଡ଼ିଲେ, ତାହା ଧୂଳିପରି ଗୁଣ୍ଡ ହୋଇଯିବ ।

ପ୍ରତିଦ୍ୱନ୍ଦ୍ୱୀ ପଛଘୁଞ୍ଚା ଦେଇ ପଳାଇ ନ ଯିବା ଯାଏ ଏ ଲଢ଼େଇ ଲାଗି ରହିଥାଏ । ବିଜିତ ପଛକୁ ବୁଲି ପଡ଼ିଲେ ସେ ହାରିଗଲା ବୋଲି ଜଣାଯାଏ । ବିଜୟୀ ପଛକୁ ଥରେ ହେଲେ ନ ଚାହିଁ ବିଜୟ ଗର୍ବରେ ଆଗକୁ ଚାଲିଯାଏ ।

ଏମାନେ ଦଳ ଦଳ ହୋଇ ବୁଲି ଚରନ୍ତି । ଦଳରେ ପନ୍ଦର କୋଡ଼ିଏରୁ ବେଶୀ ନ ଥାନ୍ତି । ଆଶ୍ଚର୍ଯ୍ୟର କଥା, ସେ ଦଳରେ ପୁରୁଷ ମେଣ୍ଢା ନ ଥାନ୍ତି । କେବଳ ମା' ଓ ଛୁଆମାନଙ୍କ ଦଳ । ସେମାନଙ୍କ ମଧ୍ୟରୁ ଯେ ସବୁଠାରୁ ବେଶୀ ବୟସର ସେ ସର୍ଦ୍ଦାର । ସବୁ ଛୁଆଙ୍କୁ ରକ୍ଷା କରିବାର ଦାୟିତ୍ୱ ତାର ।

# ଚିତାଲ ହରିଣ

ଆମ ଭାରତର ପ୍ରାୟ ସବୁ ଅଞ୍ଚଳର ବଣ ଜଙ୍ଗଲରେ ଚିତାଳ ହରିଣ ବାସ କରନ୍ତି । ଏମାନଙ୍କ ଦେହ ଅତି ସୁନ୍ଦର ଦେଖାଯାଏ । ତାହା ଚିତ୍ର ବିଚିତ୍ର ହୋଇଥାଏ । ତେଣୁ ସେମାନଙ୍କ ନାମ ଦିଆ ଯାଇଛି ଚିତାଳ ବା ଚିତା ହରିଣ ।

ଗୋଡ଼ ଖୁରା ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଏମାନେ ଉଚ୍ଚତା ତିନ ଫୁଟରୁ ଚାରି ଫୁଟ ପର୍ଯ୍ୟନ୍ତ ହୁଅନ୍ତି । ଲାଞ୍ଜ ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଲମ୍ବ ଚାରି ଫୁଟରୁ ଚାରି ଫୁଟ ଛ' ଇଞ୍ଚ । ଦେହର ଚମଡ଼ା ଲାଲ୍ ମିଶା ଧୂସର । ତା' ଉପରେ ଧଳା ଧଳା ଚନ୍ଦନ ବିନ୍ଦୁ ।



( ଚିତାଳ ହରିଣ )

ମୁଣ୍ଡର ଶିଙ୍ଗ ଦୁଇଟି ନାନା ଶାଖା ପ୍ରଶାଖା ଯୁକ୍ତ । ତା'ହା ଅତି ଟାଣ । ଆଖି ସାନ । ପ୍ରତ୍ୟେକ ଶିଙ୍ଗ ମୂଳରୁ ଦୁଇ କେନା ହୋଇ

ବାହାର ଥାଏ । ଗୋଟିଏ ସାନ କେନା ଆଗକୁ ଥାଏ । ସେଥିରେ ଶାଖା ନ ଥାଏ । ପଛକୁ ଯେଉଁ ବଡ଼ କେନାଟି ଉପରକୁ ଉଠି ଯାଇଥାଏ, ସେଥିରେ ବହୁତ ଶାଖା ଦେଖାଯାଏ ।

ଚିତା ହରିଣ ଶାନ୍ତ ଓ ମେଳାପି । ସାଧାରଣତଃ ମନୁଷ୍ୟଙ୍କୁ ଏମାନେ ଭୟ କରନ୍ତି ନାହିଁ । ହିଂସ୍ର ପଶୁର ଗନ୍ଧ ପାଇଲେ ଦ୍ରୁତ ଗତିରେ ପଳାଇ ଯାଇ ଆତ୍ମ ରକ୍ଷା କରନ୍ତି ।

ଦଳ ବାନ୍ଧି ଏମାନେ ବିଚରଣ କରନ୍ତି । ଦଳଟି ଅତି ବଡ଼ । ଗୋଟିଏ ଗୋଟିଏ ଦଳରେ ଶହେ, ଦେଢ଼ଶହ ପର୍ଯ୍ୟନ୍ତ ରହିଥାନ୍ତି ।

ଏହାର ସ୍ଥଳକୁ ପବିତ୍ର ମନେ କରାଯାଏ । ସାଧୁ ସନ୍ନ୍ୟାସୀମାନେ ଏହି ସ୍ଥଳରେ ବସି ତପସ୍ୟା ଓ ଉପାସନା କରନ୍ତି । ସୁନ୍ଦର ଦେଖା ଯାଉଥିବାରୁ ଧନୀ ଲୋକମାନେ ଗୋଡ଼ର ଯୋତା, ହାତଧରା ବ୍ୟାଗ୍ ପ୍ରସ୍ତୁତ କରନ୍ତି । ସେଥିପାଇଁ ଶିକାରୀମାନେ ପଇସା ଲୋଭରେ ବହୁତ ହରିଣ ମାରୁଥିଲେ । ଏମାନଙ୍କ ମାଂସ ମଧ୍ୟ ସୁଖାଦ୍ୟ ବୋଲି କୁହାଯାଏ ।

ଆଜକାଲ ସରକାରଙ୍କ କଡ଼ା କଟକଣା ଯୋଗୁ ଶିକାର ବନ୍ଦ ରହିଛି । ଲୁଚି ଚୋରିରେ ଯେ ହରିଣ ମାରୁଛି, ତାକୁ କଠିନ ଦଣ୍ଡ ଦିଆଯାଉଛି ।

ସ୍ଥାନେ ସ୍ଥାନେ ମୃଗ ବିହାର କରାଯାଇ ଏମାନଙ୍କୁ ଯତ୍ନର ସହିତ ରଖା ଯାଉଛି । ବହୁ ଦର୍ଶକ ବିଶେଷତଃ ପିଲା, ଛାତ୍ର ଛାତ୍ରୀ ସେମାନଙ୍କୁ ଦେଖି ଆନନ୍ଦ ଓ ଶିକ୍ଷା ପାଉଛନ୍ତି ।



# ମାର୍ ଖୋର୍ସ

ମାର୍‌ଖୋର୍ସ ଏକ ଛେଳି ଜାତୀୟ ଜୀବ । ଭାରତର ହିମାଳୟ ପାଦଦେଶ ଜଙ୍ଗଲରେ ପଞ୍ଜାବ, କାଶ୍ମୀର ଠାରୁ ବେଲୁଚିସ୍ଥାନ, ଆଫଗାନିସ୍ଥାନର ନିବିଡ଼ ଜଙ୍ଗଲ ହେଉଛି ଏମାନଙ୍କ ରାଜ୍ୟ । ବରଫ ଘେରା ପାହାଡ଼ ଶୃଙ୍ଗ ଉପରେ ଅତି ନିର୍ଜନ ସ୍ଥାନରେ ଏମାନେ ସାଧାରଣତଃ ବାସ କରନ୍ତି । ମଝିରେ ଅବଶ୍ୟ କେବେ କେବେ ସମତଳ ଅଞ୍ଚଳକୁ ଦଳବାନ୍ଧି ଆସନ୍ତି । ସେହି ସମୟରେ ଲୋକେ ଯାହା ଏ ଅଦ୍ଭୁତ ଜନ୍ତୁର ଦର୍ଶନ ପାଇଥାନ୍ତି ।



( ମାର୍ଖୋର୍ସ )

ଏମାନଙ୍କ ଉଚ୍ଚତା ପ୍ରାୟ ତିରିଶ ଇଞ୍ଚ ପର୍ଯ୍ୟନ୍ତ ଏବଂ ମୁଣ୍ଡଠାରୁ ଲାଞ୍ଜ ପର୍ଯ୍ୟନ୍ତ ଲମ୍ବା ମଧ୍ୟ ସେତିକି । ଦେହରେ ବହଳ ଲୋମ । ବେକ ପାଖ ଓ ପିଠିରେ ଏ ଲୋମଗୁଡ଼ିକ ତଳକୁ ଓହଳି ପଡ଼ିଥାଏ । ୫୦ ଇଞ୍ଚ ଲମ୍ବା ଦାଢ଼ି । ଏମାନଙ୍କୁ ଛେଳି ଜାତିର ରାଜା କୁହାଯାଏ ।

ଏମାନଙ୍କ ଶିଙ୍ଗ ଦୁଇଟି ମୋଟା ଓ ଟାଣ । ତାର ବିଶେଷତ୍ୱ ହେଉଛି, ତାହା କାଠ କଣା କରିବା ସ୍କ୍ରୁ ଭଳି ମୋଡ଼ି ମୋଡ଼ି ହୋଇ-ଥାଏ । ଅଗ ମୁନିଆଁ । ଶତ୍ରୁର ଆଶଙ୍କା କଲେ ମୁଣ୍ଡ ତଳକୁ ପୋତି ଶିଙ୍ଗରେ ଏପରି ଭୁଷା ଦିଅନ୍ତି ଯେ, ସେଥିରେ ଥରକରେ ଶତ୍ରୁ ମରିଯାଏ ।

ଆତ୍ମରକ୍ଷା କରିବାର ଏମାନଙ୍କର ଆଉ ଗୋଟିଏ ଉପାୟ ହେଉଛି କୁଦା ମାରି ପଳାଇ ଯିବା । ପର୍ବତର ଗୋଟିଏ ଶୃଙ୍ଗରୁ ଅନ୍ୟ ଶୃଙ୍ଗକୁ ସେମାନେ ଅକ୍ଳେଶରେ ଡେଇଁ ପଡ଼ନ୍ତି । ଶିକାରୀ ପକ୍ଷରେ ଏତେ ଦୂର ଡେଇଁବା ଅସମ୍ଭବ ।

ଏହି ଶିଙ୍ଗ ଓ ଗୋଡ଼ ଯୋଗୁ ସେମାନଙ୍କର କାହାରିକୁ ଭୟ ନ ଥାଏ ।



# ଥାମିନ୍

ଥାମିନ୍ ହରିଣଙ୍କ ସାମ୍ରାଜ୍ୟ ହେଉଛି ମଧ୍ୟ-ଏସିଆର ବଣ-ଜଙ୍ଗଲରେ ଥିବା ସନ୍ତସନ୍ତିଆ ଜଳାଧାର ଭୂମି । ଏମାନେ ଏଭଳି ନିର୍ଜନ ସ୍ଥାନରେ ରହନ୍ତି ଯେ, ଲୋକମାନେ କ୍ୱଚିତ ଏ ଜାତିର ହରିଣରେ ଦର୍ଶନ ପାଆନ୍ତି । ଭାରତ, ଚୀନ ସୀମାନ୍ତରେ ବିଶେଷ ଭାବରେ ବର୍ମା ଓ ଥାଇଲାଣ୍ଡ ଏମାନଙ୍କ ଜନ୍ମସ୍ଥାନ ।

ଥାମିନ୍ ଶିଙ୍ଗର ବିଶେଷତ୍ୱ ହେଉଛି, ମୁଣ୍ଡର ଜନ୍ମ ସ୍ଥାନରୁ ଏହା ଦୁଇ କେନା ହୋଇଯାଏ । ଗୋଟିଏ କେନା ଅଳ୍ପ ବଙ୍କେଇ ଆଗକୁ ଲମ୍ବି ଆସିଥାଏ । ଏହା ପାଞ୍ଚ ଇଞ୍ଚ ପର୍ଯ୍ୟନ୍ତ ଲମ୍ବ ଓ ଅଗ ମୁନିଆଁ । ଅନ୍ୟ କେନାଟି ବଡ଼ । ପ୍ରାୟ ଦେଢ଼ଫୁଟ ଲମ୍ବ । ଏହା ଅଗରେ ତିନି ଗୁଚ୍ଛେଟି ବା କାହାର କାହାର ଶିଙ୍ଗରେ ପାଞ୍ଚ ଛଅଟି ପର୍ଯ୍ୟନ୍ତ ମୁନିଆଁ ନଖ ବାହାରିଥାଏ ।



( ଥାମିନ୍ )

ଏମାନେ ଗରମ ସମୟରେ ସନ୍ତସନ୍ତିଆ ଥଣ୍ଡା ଜାଗାରେ ରହନ୍ତି । ଶୀତଦିନ ଆସିଗଲେ ଅପେକ୍ଷାକୃତ ଗରମ ହେଉଥିବା ପାଖଆଖ ଜଙ୍ଗଲକୁ ଚାଲି ଯାଆନ୍ତି ।

ଏମାନଙ୍କ ଉଚ୍ଚତା ଚାରିଫୁଟ ଓ ଦୈର୍ଘ୍ୟ ପାଞ୍ଚଫୁଟ ମଧ୍ୟରେ । ଲାଞ୍ଜ ତିନି ଚାରି ଇଞ୍ଚରୁ ବଡ଼ ହୁଏ ନାହିଁ । ଆଖି ଦୁଇଟି ଅତି ସାନ ।

ଗୋଟିଏ ଦଳରେ ପ୍ରାୟ ଚାଳିଶ ପଚାଶଟା ଜୀବ ରହିଥାନ୍ତି । ଅଧିକାଂଶ ସ୍ଥଳରେ ଦେଖାଯାଏ, ସେମାନଙ୍କ ସର୍ଦ୍ଦାର ପୁରୁଷ ଥାମିନ ଅନ୍ଧ ବା କଣା । ସେମାନଙ୍କ ଶ୍ରବଣ ଶକ୍ତି ଓ ଘ୍ରାଣ ଶକ୍ତି ଏତେ ପ୍ରଖର ଯେ, ଦେଖି ନ ପାଉଥିଲେ ମଧ୍ୟ ସେମାନେ ନିଜ ଦଳକୁ ନିର୍ବିଘ୍ନରେ ଓ ନିରାପଦରେ ରକ୍ଷା କରିଥାନ୍ତି । ଶ୍ରବଣ ଓ ଘ୍ରାଣ ଶକ୍ତି ଦ୍ୱାରା ପାଖଆଖ ଅଞ୍ଚଳର ପରିସ୍ଥିତି ଭଲଭାବେ ଠଉରେଇ ନିଅନ୍ତି ଏବଂ ଆପଦ ବିପଦ ପ୍ରତି ଦଳକୁ ସାବଧାନ କରାଇ ଦିଅନ୍ତି ।

ଏପରି ଅନ୍ଧ ବା କଣା ହେବାର ଏକମାତ୍ର କାରଣ ଅନ୍ୟ ଦଳର ସର୍ଦ୍ଦାର ସହିତ ଲଢ଼େଇ । ଦୁଇ ଦଳର ସର୍ଦ୍ଦାରଙ୍କର ସାକ୍ଷାତ ହେବା ସଙ୍ଗେ ସଙ୍ଗେ ସେମାନଙ୍କର ଯୁଦ୍ଧ ଆରମ୍ଭ ହୋଇଯାଏ । ଆଗକୁ ବାହାରି ଥିବା ଛୋଟ ମୁନିଆଁ ଶିଙ୍ଗରେ ଗୋଟିଏ ପ୍ରତିଦ୍ୱନ୍ଦ୍ୱୀର ଆଖି ଫୁଟାଇ ଦେବାକୁ ଚେଷ୍ଟା କରେ । ଛୋଟିଆ ଆଖି ଦୁଇଟିର ଅତି ନିକଟରେ ଶିଙ୍ଗ ଦୁଇଟି ଥିବାରୁ ପ୍ରତିଦ୍ୱନ୍ଦ୍ୱୀର ଆଖି ହିଁ ପ୍ରଥମେ ଆଘାତ ପାଏ ।



# ବ୍ରୋକେଟ—ବାମନ ହରିଣ

ହରିଣ ଜାତୀୟ ଜୀବଙ୍କ ମଧ୍ୟରେ 'ବ୍ରୋକେଟ' ସବୁଠାରୁ ସାନ । ଏହାକୁ ବାମନ ହରିଣ କୁହାଯିବ ।



ବ୍ରୋକେଟର ଉଚ୍ଚତା ଦେଢ଼ ଫୁଟରୁ ଦୁଇ ଫୁଟ ମଧ୍ୟରେ । ମୁଣ୍ଡଠାରୁ ଲାଞ୍ଜ ପର୍ଯ୍ୟନ୍ତ ଲମ୍ବରେ ତିନ ଫୁଟ । ଆଉ ଗୋଟିଏ ଜାତିର ବ୍ରୋକେଟ ଅଛନ୍ତି, ଯେଉଁମାନଙ୍କ ଉଚ୍ଚତା ୯ ଇଞ୍ଚରୁ ଅଧିକ ହୁଏନାହିଁ ।

ଏମାନେ କେବଳ ମଧ୍ୟ ଆମେରିକାର ନିବିଡ଼ ଜଙ୍ଗଲ ଭିତରେ ଦେଖା ଯାଆନ୍ତି । ସ୍ଥାନୀୟ ଅଧିବାସୀ କେହି କେହି ଘରେ ରଖି ପୋଷନ୍ତି ।

ଏହାର ମୁହଁ ୪' ଇଞ୍ଚ ପର୍ଯ୍ୟନ୍ତ ଲମ୍ବା ହୁଏ । କାନ ଦିଓଟି ମୁହଁ ତୁଳନାରେ ବଡ଼ । ଦୁଇକାନ ମଝିରେ ଉପରକୁ ସିଧା ଉଠିଥିବା

ଦୁଇଟି ଶିଙ୍ଗର ଉଚ୍ଚତା ଦୁଇ ଇଞ୍ଚରୁ ବେଶୀ ହୁଏ ନାହିଁ । ଅଗ ମୁନିଆଁ । ଲାଞ୍ଜ ଅତି ସାନ । ଦେହ ଧୂସର ବର୍ଣ୍ଣର ଘନ ଲୋମରେ ଆବୃତ ।

ଅନ୍ୟ ହରିଣଙ୍କ ପରି ଏମାନେ କେବଳ ଘାସ ଓ ବିଭିନ୍ନ ଗଛର କଅଁଳ ପତ୍ର ଖାଇ ବଞ୍ଚନ୍ତି । ଦେହ ଅପେକ୍ଷା ଗୋଡ଼ ଗୁଡ଼ିକ ଲମ୍ବା ଥିବାରୁ ସହଜରେ କୁଦାମାରି ଦ୍ରୁତ ଗତିରେ ଦଉଡ଼ି ପାରନ୍ତି ।

ଏମାନେ ଅତି ନିରୀହ ପ୍ରାଣୀ; କିନ୍ତୁ ସାମାଜିକ ନୁହନ୍ତି । ଦଳବାନ୍ଧି ଚଳନ୍ତି ନାହିଁ । ଗୋଟିଏ ପୁରୁଷ ଓ ଗୋଟିଏ ମାଈ—ଏହିପରି ଦୁଇ ଦୁଇଟି ହୋଇ ବୁଲନ୍ତି ।

ଛୁଆ ଜନ୍ମ ହେବା ସଙ୍ଗେ ସଙ୍ଗେ ଡିଆଁ ଡେଇଁ କରେ । କେତୋଟି ସପ୍ତାହ ମାତ୍ର ମା' ପଛେ ପଛେ ରହିଥାଏ । ତାହା ପରେ ସ୍ୱାଧୀନ ଭାବରେ ଖାଦ୍ୟ ଅନ୍ୱେଷଣ କରେ ।



# ବଲ୍‌ଗା ହରିଣ

ପୃଥିବୀ ଗୋଲକର ଦୁଇ ଶେଷ ମୁଣ୍ଡକୁ ମେରୁ ଅଞ୍ଚଳ କୁହାଯାଏ । ଉପର ଉତ୍ତର ମେରୁ ଓ ତଳପାଖ ଦକ୍ଷିଣ ମେରୁ । ଏ ଦୁଇ ମେରୁ ପାଖଆଖ ଦେଶରେ ଦୁଇଟି ବିଚିତ୍ର ଜନ୍ତୁ ଦେଖା ଯାଆନ୍ତି । ଉତ୍ତରରେ ବଲ୍‌ଗା ହରିଣ ବା ରେନ୍‌ଡିଅର ଓ ଦକ୍ଷିଣରେ ପେଙ୍ଗୁଇନ ନାମକ ଗୋଟିଏ ଜାତୀୟ ପକ୍ଷୀ ।

ଉତ୍ତର ଆମେରିକା ଓ ଉତ୍ତର ଇଉରୋପ, ଉତ୍ତର ରୁଷ୍‌ର ଶେଷ ମୁଣ୍ଡ ଉତ୍ତର ମେରୁ ନିକଟବର୍ତ୍ତୀ ଦେଶ ବଲ୍‌ଗା ହରିଣର ବାସସ୍ଥାନ ।



( ବଲ୍‌ଗା ହରିଣ )

ଏ ଅଞ୍ଚଳରେ ସୂର୍ଯ୍ୟ କିରଣ କ୍ୱଚିତ ପଡ଼େ । ଛ' ମାସ ଦିନ ତ ଛ' ମାସ ରାତି । ଦିନରେ ମଧ୍ୟ ସୂର୍ଯ୍ୟ ଉତ୍ତାପ ବିଶେଷ ଜଣା ପଡ଼େ ନାହିଁ । ପ୍ରାୟ ସବୁ ସମୟରେ ବରଫ ପଡ଼ୁଥାଏ । ସମୁଦ୍ର ପାଣି ଉପରେ ବରଫ ସ୍ତର; ମାଟି ଉପରେ ମଧ୍ୟ ବରଫ ସ୍ତର । ଏଠାରେ ଯେଉଁ ଲୋକ ବସବାସ କରନ୍ତି, ସେମାନଙ୍କୁ ଏସ୍କିମୋ କୁହାଯାଏ ।

ବଲ୍‌ଗା ହରିଣ ଏସ୍କିମୋମାନଙ୍କ ଗାଡ଼ି ଟାଣେ । ତା'ର କ୍ଷୀର ସେମାନଙ୍କର ଖାଦ୍ୟ ଓ ପାନୀୟ; ମାଂସ ଜୀବନ ଧାରଣର ଏକମାତ୍ର ଉପାଦାନ । ଚମ ସେମାନଙ୍କର ପୋଷାକର କାମ ଚଳାଏ । ରହିବା ପାଇଁ ତମ୍ବୁ ବା ଘର ମଧ୍ୟ ସେହି ଚମଡ଼ାରେ କରାଯାଏ ।

ଯେଉଁ ଛ'ମାସ ଦିନ ହୁଏ, ସେତେବେଳେ ସମୁଦ୍ର କୂଳ ବରଫ ତରଳି ଯାଏ । ସେହି ବରଫ ତଳେ ଯେଉଁ ଶିଉଳି ବା ଦଳ ଜନ୍ମ ହୋଇଥାଏ, ବଲ୍‌ଗା ହରିଣଙ୍କର ତାହା ହିଁ ଖାଦ୍ୟ । ରାତି ଛ'ମାସ ସେମାନେ କିଛି ନ ଖାଇ କଟାଇ ଦିଅନ୍ତି ।

ସ୍ଥାନୀୟ ଲୋକେ ଏହାର ନାମ ଦେଇଛନ୍ତି "କାରିବଉଜ୍" । ଇଂରେଜୀରେ କୁହାଯାଏ ରେନ୍ ଡିଅର ।

ବଲ୍‌ଗା ଉଚ୍ଚତାରେ ପ୍ରାୟ ପାଞ୍ଚଫୁଟ । ଦେହ ଘନ ଲୋମରେ ଆବୃତ । ଦେହର ବର୍ଣ୍ଣ ଗାଢ଼ ଧୂସର ଓ ବେକ ତଳେ ଧଳା ।

ସାଧାରଣ ହରିଣଙ୍କ ପରି ଏମାନଙ୍କ ଗୋଡ଼ ସରୁ କମ୍ବା ଲମ୍ବା ନୁହେଁ । ଦେହରେ ମାଂସ ବେଶୀ । ତେଣୁ ଏମାନେ ଶୀଘ୍ର ଦଉଡ଼ି ପାରନ୍ତି ନାହିଁ । କିନ୍ତୁ ଆମ ଦେଶର ଗଧପରି ବହୁତ ଓଜନର ବୋଝ ପିଠିରେ ଲଦି ବୋହି ପାରନ୍ତି ।

ଏମାନଙ୍କ ଶିଙ୍ଗ ଦୁଇଟି ଖୁବ୍ ବଡ଼ ଓ ନାନା ଶାଖା ପ୍ରଶାଖା ଯୁକ୍ତ । ଏହି ଶିଙ୍ଗ ବଡ଼ ଟାଣ । ଏସ୍କିମୋ ମାନଙ୍କର ଏହା ପ୍ରଧାନ ଅସ୍ତ୍ର । ଏହାର ସାହାଯ୍ୟରେ ସେମାନେ ଶିଲ୍ ଓ ସେମାନଙ୍କର ବଡ଼ ଶତ୍ରୁ ବରଫ ଭାଲୁଙ୍କୁ ଶିକାର କରିଥାନ୍ତି ।

ଏହି ଶିଙ୍ଗ ଚାରିଫୁଟ ପର୍ଯ୍ୟନ୍ତ ଲମ୍ବା ହୋଇଥାଏ । ଶିଙ୍ଗ ମୂଳରୁ ଦୁଇଟି ସାନ ଶିଙ୍ଗ ମଧ୍ୟ ଆଗକୁ ବାହାରି ଆସିଥାଏ ।

ମେରୁଠାରୁ ଦୂରରେ ଥିବା ଅଞ୍ଚଳରେ ସୂର୍ଯ୍ୟ ଉତ୍ତାପ ଅପେକ୍ଷାକୃତ ବେଶୀ । ବରଫ କମ୍ ପଡ଼ୁଥାଏ । ସେ ଅଞ୍ଚଳର ଲୋକେ ନିଜ ଚଳିବା ପାଇଁ ଖାଦ୍ୟ ଶସ୍ୟ ଉତ୍ପାଦନ କରିଥାନ୍ତି । ଏହି ବଲ୍‌ଗା ହରିଣ ଦ୍ୱାରା ହଳ କରି ଜମି ଚାଷ କରାଯାଏ ।



# ଧଳା ଲାଞ୍ଜ ହରଣ ବା 'ଭିର୍‌ଗିନଆ'

ମଧ୍ୟ-ଆମେରିକାର ଘନ ଜଙ୍ଗଲରେ ବାସ କରୁଥିବା 'ଭିର୍‌ଗିନଆ' ହରଣ ଜାତୀୟ ପଶୁ ହେଲେ ମଧ୍ୟ, ଏମାନଙ୍କର ବିଶେଷତ୍ୱ ହେଉଛି ଲାଞ୍ଜ । ସବୁ ପ୍ରକାର ହରଣଙ୍କର ଲାଞ୍ଜ ଗାଈ ଗୋରୁଙ୍କ ଲାଞ୍ଜ ପରି; ଶେଷ ମୁଣ୍ଡରେ ମେଞ୍ଚାଏ ଲମ୍ବ ଲୋମ । ମାତ୍ର ଭିର୍‌ଗିନଆ ଲାଞ୍ଜ ହେଉଛି ଘୋଡ଼ା ଲାଞ୍ଜ ପରି କେବଳ ପୁଳାଏ ଅଳ୍ପ ଲମ୍ବ ବାଳ । ଏମାନଙ୍କର ସର୍ବାଙ୍ଗ ଧଳା ମିଶା ଧୂସର ରଙ୍ଗ ହେଲେ ମଧ୍ୟ ଲାଞ୍ଜର ବାଳ ଧଳା । ତେଣୁ ଏମାନଙ୍କୁ ଆଖ୍ୟା ଦିଆ ଯାଇଛି ଧଳା ଲାଞ୍ଜ ହରଣ ।



( ଧଳା ଲାଞ୍ଜ ହରଣ )

ଏମାନଙ୍କ ଶିଙ୍ଗ ଦୁଇଟି ବହୁ ଶାଖା ପ୍ରଶାଖା ଯୁକ୍ତ । ବିପଦର ଆଶଙ୍କା ପାଇଲେ ମୁଣ୍ଡ ଓ ଲାଞ୍ଜ ଉପରକୁ ଟେକି ଅତି କ୍ଷିପ୍ର ଗତିରେ ନିରାପଦ ସ୍ଥାନକୁ ପଳାଇ ଯାଆନ୍ତି ।

ଗୋଟିଏ ଗୋଟିଏ ଦଳରେ ଛଅ ଶହରୁ ପାଞ୍ଚ ଶହ ପର୍ଯ୍ୟନ୍ତ ଭିର୍‌ଗିନଆ ଏକାଠି ଚଳପ୍ରଚଳ ହୁଅନ୍ତି । ସେମାନେ ରହୁଥିବା ଅଞ୍ଚଳରୁ ଘାସ, ବୁଦା ଶେଷ ହୋଇଗଲେ ଦଳବାନ୍ଧି ସେମାନେ ନିଘଞ୍ଚ ଜଙ୍ଗଲ ଆଡ଼କୁ ଚାଲି ଯାଆନ୍ତି ।

ଜଙ୍ଗଲରେ ରହୁଥିବା ଅସଂଖ୍ୟ ସାପ ଏମାନଙ୍କର ବଡ଼ ଶତ୍ରୁ । ଜଣେ ଶିକାରୀ ପାଇଥନ ସାପ ଓ ଭିର୍‌ଗିନଆ ହରିଣଙ୍କ ଯୁଦ୍ଧ ସମ୍ପର୍କରେ ଲେଖିଛନ୍ତି—

ଏ ଯୁଦ୍ଧ ବର୍ଣ୍ଣନୀୟ । ଆମେ ଉଚ୍ଚ ଗଛରେ ଲୁଚି ବସିଥିବା ବେଳେ ଦେଖିଲୁ ଦଳେ ଭିର୍‌ଗିନଆ ଲାଞ୍ଜ ଟେକି ଆଗକୁ ଦଉଡ଼ୁଛନ୍ତି । ଅତି ଦୀର୍ଘ ପାଇଥନ ହାବୁଡ଼ରେ ପଡ଼ିଗଲେ । ଶିଙ୍ଗ ଭୁସି ତା'ର ପେଟ ଫଟାଇ ଦେଲେ ମଧ୍ୟ ପାଇଥନ ପଛଘୁଞ୍ଚା ଦେଲା ନାହିଁ । ଗୋଟାକୁ ଗିଳି ଦେବାକୁ ଚେଷ୍ଟା କଲା । ଏକ ସମୟରେ ଚାରିଗୋଟି ହରିଣ ବହୁତ ଉଚ୍ଚକୁ ଉଠିଯାଇ ତା' ଉପରେ ଏପରି କୁଦି ପଡ଼ିଲେ ଯେ, ସେମାନଙ୍କ ଖୁରା ଆଘାତରେ ସାପର ସର୍ବାଙ୍ଗରୁ ମାଂସ ବାହାରି ପଡ଼ିଲା ।

ପରଦିନ କିଛି ଦୂରରେ ଦେଖିଲୁ ଗୋଟିଏ ଅତି ଲମ୍ବା ପାଇଥନ ଜଙ୍ଗଲ ଭିତରେ ମରି ପଡ଼ିଅଛି । ତା' ମୁହଁରେ ଦୁଇଟା ବଡ଼ ବଡ଼ ଶିଙ୍ଗ ।

ପାଖକୁ ଯିବାରୁ ଜଣା ପଡ଼ିଲା, କେତେଦିନ ତଳେ ସେ ଗୋଟାଏ ହରିଣ ଗିଳିଛି । ମାଂସ ହାଡ଼ ପେଟକୁ ଯାଇ ମିଳେଇ ଗଲାଣି । ମାତ୍ର ମୁଣ୍ଡର ଶିଙ୍ଗ ଦୁଇଟା ଭିତରକୁ ଯାଇପାରିଲା ନାହିଁ । ତାହା ମଧ୍ୟ ମିଳାଇ ଯିବାର ଲକ୍ଷଣ ନୁହେଁ । ପାଟି ପାଖରେ ଅଟକି ରହିଛି । କେତେ ଦିନ ଛଟପଟ ହୋଇ ପାଇଥନ ଶେଷରେ ଏହି ଦଶା ଭୋଗିଛି ।



# ସାବ୍‌ଲ ବା ସବ୍‌ଲ ହରିଣ

ଆମେରିକାର ଜଙ୍ଗଲରେ ଗୋଟିଏ ଜାତୀୟ ହରିଣ ବହୁ ସଂଖ୍ୟାରେ ଦେଖାଯାନ୍ତି । ସ୍ଥାନୀୟ ଲୋକେ ସେମାନଙ୍କ ନାମ ଦେଇଛନ୍ତି ସାବ୍‌ଲ ବା ସବ୍‌ଲ (sable) ହରିଣ । ଆମ ଭାଷାରେ ସବଳ ହରିଣ କୁହାଯାଇ ପାରେ । କାରଣ ହରିଣ ଗୋଷ୍ଠୀର ଜୀବମାନଙ୍କ ଭିତରେ ଏମାନେ ଅତି ବଳବାନ୍ ଓ ସାହସୀ । ସେମାନଙ୍କ ଗଠବଧି, ଚାଲିଚଳଣି ମଧ୍ୟ ବୀରତ୍ୱ ବ୍ୟଞ୍ଜକ । ସେଥିରୁ ଜଣାଯାଏ, ସେମାନେ ଯେପରି ମନେ କରୁଛନ୍ତି, ସେମାନଙ୍କର ଡରଭୟ କାହାକୁ ନାହିଁ ।

ଏମାନେ ନିବିଡ଼ ଜଙ୍ଗଲ ମଧ୍ୟରେ ବାସ କରନ୍ତି । ମାତ୍ର ସେ



( ସାବ୍‌ଲ ହରିଣ )

ସ୍ଥାନ ସନ୍ତସନ୍ତିଆ କି କାଦୁଆ ନୁହେଁ । ଦୂରରୁ ଖରା ପଡ଼ିଥିବା ଶୁଖିଲା ଅଥଚ ନାତିଘନ ଗଛପତ୍ର ଗହଳି ହିଁ ଏମାନଙ୍କର ପ୍ରିୟ ଆଶ୍ରୟ ସ୍ଥଳ ।

ସାବ୍‌ଲ ହରଣରେ ଶିଙ୍ଗ ଦୁଇଟି ପାଞ୍ଚ ଫୁଟରୁ ବେଶୀ ଲମ୍ବା । ଏହା ପିଠି ଆଡ଼କୁ ଦା' ଭଳି ବଙ୍କେଇ ରହିଥାଏ । ଅଗ ଅନ୍ତ ମୁନିଆଁ ଓ ଦେହସାକ କରତ ଧାର ପରି କଣ୍ଟା କଣ୍ଟା । ପୁରୁଷ ଓ ମାଈ ଦୁଇ ପ୍ରକାର ସାବ୍‌ଲଙ୍କ ମୁଣ୍ଡରେ ଶିଙ୍ଗ ଥାଏ ।

ଶିଙ୍ଗ କଡ଼କୁ ଥିବା କାନ ଦୁଇଟି ଅପେକ୍ଷାକୃତ ଲମ୍ବା ଓ ଶିଙ୍ଗ ତଳକୁ ଥିବା ଆଖି ଦୁଇଟି ସାନ । ଖୁରାଠାରୁ ପିଠି ପର୍ଯ୍ୟନ୍ତ ଉଚ୍ଚତା ସାଢ଼େ ପାଞ୍ଚଫୁଟ ।

ମୁହଁରେ ଆଖି ତଳୁ ଥୋମଣି ପର୍ଯ୍ୟନ୍ତ ଦୁଇ ପାଖରେ ଦୁଇଟି ଧଳାଗାର ଥାଏ । ପେଟକୁ ଛାଡ଼ିଦେଲେ ସର୍ବାଙ୍ଗ ଗାଢ଼ କଳା ଲୋମରେ ଢାଙ୍କି ହୋଇଥାଏ ।

ଏମାନେ ଦଳବାନ୍ଧି ରହନ୍ତି । ଗୋଟିଏ ଗୋଟିଏ ଦଳରେ ପଚିଶରୁ ଶହେ ପର୍ଯ୍ୟନ୍ତ ଦେଖା ଯାଆନ୍ତି ।

ସାବ୍‌ଲ ଚାଲି ସାରଲ୍ୟ ବ୍ୟଞ୍ଜକ । ଚାଲନ୍ତି ତ ନାହିଁ; ଘୋଡ଼ାଙ୍କ ପରି କଦମ ପକାଇ ଗତି କରନ୍ତି । ଯେତେବେଳେ ମୁଣ୍ଡ ହଲାଇ, ଗୋଟିକ ପରେ ଗୋଟିଏ ସୈନ୍ୟ ବାହିନୀ ମାର୍ଚ୍ଚିଂ କଲା ପରି ସେମାନଙ୍କ ଅଭିଯାନ ଦେଖିଲେ ବଳବାନ୍ ବାଘ ମଧ୍ୟ ଭୟ ପାଇଥାଏ ।

ଖୁରୁଙ୍କ ପରି ଦଉଡ଼ି ପଳାଇ ଯିବା ପ୍ରକୃତି ଏମାନଙ୍କର ନୁହେଁ । ଯେତେ ବଡ଼ ଶକ୍ତିଶାଳୀ ଶତ୍ରୁ ହୋଇଥାଉ ପଛକେ, ଶତ୍ରୁ ସହିତ ସେମାନଙ୍କର ସମ୍ମୁଖୀନ ହୁଅନ୍ତି । ଇସ୍ପାତ ପରି ଟାଣ ଶିଙ୍ଗ ଦୁଇଟା ସେମାନଙ୍କର ପ୍ରଧାନ ଅସ୍ତ୍ର । ଏହି ଶିଙ୍ଗ ଏବଂ ଦଳର ଏକତା ଓ ଦୃଢ଼ତା ସେମାନଙ୍କୁ ପ୍ରାୟ ସବୁ ଯୁଦ୍ଧରେ ବିଜୟୀ କରିଥାଏ ।

